সামযিক

# ଗଳ୍ପ ସଂକଳନ

— ୨ —

॥ ସମ୍ପାଦକ ॥

ଶ୍ରୀ ଶିଶିର ମହାପାତ୍ର

॥ ପରିକଳ୍ପନା ସମ୍ପାଦକ ॥

ଶ୍ରୀ ସୁବାସ ମହନ୍ତି

କାର୍ଯ୍ୟାଳୟ
ଚୌଧୁରୀ ବଜାର
କଟକ-୩

ମୂଲ୍ୟ : ଏକ ଟଙ୍କା

# ଲେଖା ଓ ଲେଖକ

ଗଳ୍ପ ସାହିତ୍ୟରେ ଦୁର୍ବୋଧତା — ସମ୍ପାଦକୀୟ

## ● ପ୍ରବନ୍ଧ ଓ ଆଲୋଚନା ●

[redacted]ଆ ଗଳ୍ପ ଓ ଗାଳ୍ପିକ — ଡକ୍ଟର ଶ୍ରୀନିବାସ ମିଶ୍ର
ମଙ୍ଗଳର ମୃତ୍ୟୁ ଓ ଗାଳ୍ପିକ ସୁରେନ୍ଦ୍ର — ଅଧ୍ୟାପକ ପୀତାମ୍ବର ପ୍ରଧାନ
ସାମୟିକ ଗଳ୍ପ ସଂକଳନ
(୧) ମୋ ଦୃଷ୍ଟିରେ ··· ବିଜୟ ଚନ୍ଦ୍ର ଦାସ

## ● ଗଳ୍ପ ●

ଭୂପେନ ଗୋସ୍ୱାମୀ ··· ଦୃଶ ଓ ଦୃଷ୍ଟି
ପ୍ରମୋଦ ପଣ୍ଡା — ଅନେକ କୋଠରୀ
ଅଧ୍ୟାପକ ଫଣୀ ମହାନ୍ତି — ସଂଘର୍ଷ
ବିପିନ ହୋତା — ଅଶ୍ରୁମୁଖୀ
ଚନ୍ଦ୍ରଲେଖା ରଥ — ଅବ୍ୟକ୍ତ ଅଭିବ୍ୟକ୍ତି
ସୁବାସ ମହନ୍ତାବ — ଅନ୍ତଃସ୍ୱର
ଅନ୍ତର୍ଯ୍ୟାମୀ ମହାପାତ୍ର ··· ଅଜାଣି ସ୍ମୃତି
ସୁବୋଧ ଚନ୍ଦ୍ର ଦାସ — ଦୁଃସ୍ୱପ୍ନ ଏକ ରାତିର
ରବୀନ୍ଦ୍ର ନାଥ ପୁହାଣ ··· ପ୍ରତିବିମ୍ବ
ପ୍ରିୟବ୍ରତ ଦାସ ··· ଦୁର୍ଯ୍ୟୋଗ
ବିମଳା ସ୍ୱସ୍ତି — ଶବର ଶୋଭାଯାତ୍ରା
ଶରତ ଚନ୍ଦ୍ର ନାୟକ — ମନ ଓ ମନନ
ଅଧ୍ୟାପକ କୁଳମଣି ମହାପାତ୍ର — କାଚ ବେପାର
ଅଧ୍ୟାପକ ସତ୍ୟନାରାୟଣ ମହାନ୍ତି — ସମୁଦ୍ର
କମଳାକାନ୍ତ ପଣ୍ଡା (କଳ୍ପକାନ୍ତ) — ପ୍ରବୃତ୍ତି
ପ୍ରସନ୍ନକୁମାର ପାଟଶାଣୀ — ସଂବାଦ
ଅଧ୍ୟାପକ ବୈଷ୍ଣବଚରଣ ସାମଲ — ମୁଁ ମଧ୍ୟାହ୍ନ, ଛୁଇ ଓ ଅନ୍ଧାର
ବିବେକାନନ୍ଦ ଜେନା — ଯାତ୍ରା
ନାରାୟଣ ପଣ୍ଡା — ମହାତୀର୍ଥ ଯାତ୍ରୀ

## ସମ୍ପାଦକୀୟ—

# ॥ ଗଳ୍ପ ସାହିତ୍ୟରେ ଦୁର୍ବୋଧତା ॥

ଆଧୁନିକ ଓ ଯାନ୍ତ୍ରିକ ଯୁଗର ଚେତନାକୁ ନେଇ ତଥାକଥିତ ସାହିତ୍ୟରେ ଯେଉଁ ବିପ୍ଳବ ବା ନୂତନର ସ୍ୱର ଉଠିଛି ତାହା ଉପରେ ବହୁ ବାଦାନୁବାଦ ହୋଇଗଲଣି । ସାମ୍ପ୍ରତିକ ଯୁଗରେ ସାହିତ୍ୟର ଯେଉଁ ପରୀକ୍ଷା ନିରୀକ୍ଷା ଚାଲିଛି ଦେଖିରେ ଅସ୍ଥିରଚିତ୍ତହିଁ ସମସ୍ତଙ୍କର ସନ୍ଦେହ ହୋଇପଡ଼ୁଛି । ବିଶେଷତଃ ଅତ୍ୟାଧୁନିକ କବିତା ଅନ୍ୟ ଅର୍ଥରେ ଗଦ୍ୟ କବିତାର ଦୁର୍ବୋଧତା ବା 'ବୁଝା ପଡ଼ୁନାହିଁ'— ଏହିପରି କିଛିଦିନ ଏ କାଳର ପାଠକମାନଙ୍କୁ ଘାରିଥିଲା । ମାତ୍ର ଏହି କବିତାକୁ ଅବୋଧ ବା ଦୁର୍ବୋଧ କହି କୌଣସି ସମାଲୋଚକ ପ୍ରତ୍ୟକ୍ଷରେ ସମାଲୋଚନା କରିବାକୁ ଆଗଭର ହୋଇନାହାନ୍ତି । କାରଣ ସମାଲୋଚକ ସର୍ବଦା ନିଜର ଦୁର୍ବଳତାକୁ ଭୟ କରନ୍ତି । ଯାହାହେଉ ଏହି ଆଧୁନିକ କବିତା ପ୍ରତି ବିମୁଖତା କ୍ରମେ କମି ବୋଧଗମ୍ୟ ହେବାକୁ ବସିଲାଣି ବୋଲି ଅନେକ ବିଚାରିଲେଣି । ଏହି ଅତ୍ୟାଧୁନିକତା ଯେ କେବଳ କବିତାରେ ପଶିଛି ତାହା ନୁହେଁ ; ବର୍ତ୍ତମାନ ଏହାର ଦୁର୍ବୋଧତା ଗଳ୍ପ ସାହିତ୍ୟରେ ନିଉ ମୁଭମେଣ୍ଟ ସହିତ ଆରମ୍ଭ ହୋଇଅଛି ।

ନିଜତ୍ୱ ନାମରେ ଅନେକେ ଯେଉଁ ଛଳନାରେ ବଶବର୍ତ୍ତୀ ହୋଇ ଏ ଦେଶ ସମାଜକୁ ବୋମା ଫିଙ୍ଗି ଭାଙ୍ଗିଦେଇ ବା ଜଗନ୍ନାଥ ସଂସ୍କୃତିକୁ ଓଲଟ୍ କଣ୍ଟ୍ରରେଭେଟିଜମ୍ କହି ମାର୍କସ ବା ଲେନିନ୍‌ଙ୍କର ଚିନ୍ତାଧାରାକୁ ଆମ ସାମାଜିକ ଜୀବନରେ ହୁଏତ ପୂରାଇ ପାରନ୍ତି—ମାତ୍ର ଏ ଜଗନ୍ନାଥ ଧାମର ଅସ୍ଥି ମଜ୍ଜାଗତ ସଂସ୍କୃତିକ ଚେତନାକୁ ମନ ମଧ୍ୟରୁ ଉତ୍ପାଟନ କରି ବୋମାଦ୍ୱାରା ଧ୍ୱଂସ କରିଦେବା ସହଜ ନୁହେଁ । ଅର୍ଥନୈତିକ ସ୍ୱାଧୀନତା ପାଇଁ ହେଉ ବା ସାମାଜିକ କୁସଂସ୍କାରକୁ ଦୂରୀକରଣ କରିବାକୁ ହେଉ ଭଙ୍ଗାରୁଜା କରି କୌଣସି ନିଉ ଏଷ୍ଟାବ୍ଲିସ୍‌ମେଣ୍ଟ କରିହୁଏ ନାହିଁ—କାରଣ ତାଙ୍କୁ ଯେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଫର୍ମ ଗ୍ରହଣ କରିବାକୁ ହେବ । ଏବେ ସାମ୍ପ୍ରତିକ ଗଳ୍ପରେ କଳ୍ପନା ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏହା ମଧ୍ୟ ବିଜ୍ଞାନର ସାଧାରଣବାଦ ବା ଜେନେରାଲାଇଜେସନ୍ ଉପରେ ସ୍ୱାତନ୍ତ୍ର୍ୟତା ଦିଏ । ବିଜ୍ଞାନର କାଳଜୟୀରୂପ ରକେଟ୍ ଓ ପରମାଣୁ ବୋମାର ଆତଙ୍କତା ସମସ୍ତଙ୍କ ମନକୁ ଆନ୍ଦୋଳିତ କରିଛି । ପରିବାର ନିୟନ୍ତ୍ରଣ ପାଇଁ ଲୁପ୍ ଓ ନିରୋଧର ଯେଉଁ ଅବାଧ ପ୍ରଚାର ତାହା ଆଜି ଅଶ୍ଳୀଳତାକୁ

ମାନୁନାହିଁ । ହୋଟେଲ ଓ ନାଇଟ୍‌କ୍ଲବର ଜୀବନ କିମ୍ବା ନାସ୍ତି ଜୀବନରେ କାମୋତ୍ତେଜନାପ୍ରଦ ଓ କ୍ରୂର ଖେଳନାରେ ଏକ ସଙ୍ଗେ ବୁଢ଼ାଏ ସଦ୍ୟଜାତ ଶିଶୁଙ୍କର ଅଦଳ ବଦଳ ଯେପରି ସାଧାରଣ ହୋଇପଡ଼ିଲାଣି ସେହିପରି ଲେଖକର ଚିନ୍ତାଧାରା ମଧ୍ୟ ସମସ୍ତ ଅନୁଭୂତିମୂଳକ ହେଉଅଛି । ନୂତନ ଶୈଳୀରେ ଆଙ୍ଗିକ ଓ ଆତ୍ମିକ ପରିବର୍ତ୍ତନ ଭିତରେ ପ୍ରତୀକବାଦ ବା ସିମ୍ବଲିଜମ୍ ଓ ବର୍ଗବାଦ ବା ସ୍କ୍ୱାରିଜମ୍ ଦ୍ରୁତତର ପରୀକ୍ଷା ଓ ପ୍ରୟୋଗ ହେଉଛି ନୂତନତାର ବାର୍ତ୍ତାବହ ମାତ୍ର ଏ ସମସ୍ତର କୃତ୍ରିମତା ବିଶେଷତଃ ଆମ ସାହିତ୍ୟରେ ଦେଖାଦେଇଛି । ପାଶ୍ଚାତ୍ୟ ଦେଶରେ ବିଜ୍ଞାନର ଅଗ୍ରଗତି ପରି ଆମ ଦେଶରେ ବିଜ୍ଞାନର ଅଗ୍ରଗତି ହୋଇନାହିଁ । ମାତ୍ର ବୈଦେଶିକ ସାହିତ୍ୟର ଅନୁକରଣ ଆମ ସାହିତ୍ୟରେ ବିଶେଷଭାବେ ଦେଖା ଦେଇଛି ।

ଯାହାହେଉନା କାହିଁକି ଆଧୁନିକ ଗାଳ୍ପିକ ଆଜିର ବାସ୍ତବତାକୁ ବସ୍ତୁ-ଭାବରେ ଗ୍ରହଣ କରି ପ୍ରକାଶ କରିବାକୁ ପ୍ରୟାସୀ । ମାତ୍ର ପ୍ରକୃତ ବାସ୍ତବତାକୁ ପ୍ରକାଶ କରିବାକୁ ଚାଲିବା ଅସହାୟ ହୋଇପଡ଼ୁଛି । ଅନ୍ୟ ପକ୍ଷରେ ସେ ଯାହା ପ୍ରକାଶ କରୁଛି ତାହା ଦୁର୍ବୋଧ ହୋଇପଡ଼ୁଛି । ଫଳରେ ପ୍ରତ୍ୟେକ ଲେଖକ ଏ ପରିବର୍ତ୍ତନଶୀଳ ଯୁଗରେ ବାସ୍ତବତାକୁ ନୂଆ ଅର୍ଥରେ ରୂପ ଦେବାକୁ ବ୍ୟକ୍ତିଗତ ଉପାୟ ଖୋଜିବାରେ ଯେପରି ବ୍ୟସ୍ତ ହୋଇଉଠିଛନ୍ତି, ସେଥିପାଇଁ ସେମାନେ ଅବାସ୍ତବ, ଅବାନ୍ତର, ରୁକ୍ଷ ହୋଇ ପଡ଼ିବାକୁ ବାଧ୍ୟ ହେଉଛନ୍ତି । ଏଣୁ ପାଠକକୁ ଏହା ବୁଝିବାକୁ କଷ୍ଟ ହେଉଅଛି । ଏଣୁ ଆତ୍ମକୈନ୍ଦ୍ରିକତାକୁ ବୁଝିବାକୁ ହେଲେ ପାଠକକୁ ଲେଖକର ଚିନ୍ତାଧାରାକୁ ଅଧ୍ୟୟନ କରି ନୂତନ ଦିଗନ୍ତର ଜୀବନ ଦର୍ଶନ ଚାହୁଁବାକୁ ହେବ ନିଶ୍ଚୟ । ମାତ୍ର ଆଧୁନିକତା ଓ ଏକ୍ସପେରିମେଣ୍ଟାଲିଜମ୍ ନାମରେ ଯଥେଚ୍ଛାଚାରିତା ଓ ଲକ୍ଷ୍ୟହୀନତା ଜନ୍ମ କରିବା ନିଜ ପ୍ରତି ହିଁ ଅବମାନନା ।

## ସପ୍ତମ ବାର୍ଷିକ ଯୁବଲେଖକ ସମ୍ମେଳନ—

ସପ୍ତମ ବାର୍ଷିକ ଓଡ଼ିଆ ଯୁବଲେଖକ ସମ୍ମେଳନ ଚଳିତ ମାସରେ ଫୁଲବାଣୀଠାରେ ବିପୁଳ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ଅନୁଷ୍ଠିତ ହୋଇଯାଇଛି । ଆଗାମୀ ସାହିତ୍ୟ ପାଇଁ ଏ ତାରୁଣ୍ୟର ଅପୂର୍ବ ସମାବେଶରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଆସିଥିବା ଯୁବ ସାହିତ୍ୟିକଙ୍କ ପ୍ରାଣରେ ଆତ୍ମଚେତନାର ଭିତ୍ତି ସ୍ଥାପନ କରିବା ସଙ୍ଗେ ସଙ୍ଗେ ସାହିତ୍ୟର ନୂତନତ୍ୱର ଆବାହନୀକୁ ସ୍ୱୀକୃତ ଦେବାପାଇଁ ସଙ୍କଳ୍ପବଦ୍ଧ ହିଁ ଆମର ଆନନ୍ଦ ଓ ଆଶା ।

—ଶିଶିର ମହାପାତ୍ର
( ସମ୍ପାଦକ )

# ଓଡ଼ିଆ ଗଳ୍ପ ଓ ଗାଳ୍ପିକ

## ଡକ୍ଟର ଶ୍ରୀନିବାସ ମିଶ୍ର, ଏମ୍.ଏ., ପି.ଏଚଡ଼.

କଥାଟିଏ କହୁ , କଥାଟିଏ କହୁଁ ,
କିସ କଥା, ବେଙ୍ଗୁଲି କଥା,
କି ବେଙ୍ଗୁଲି, କାଠ ବେଙ୍ଗୁଲି ।

ଏ କଥନର ପରମ୍ପରା ରକ୍ଷା କରି ଓଡ଼ିଆ କାହାଣୀର ସୃଷ୍ଟି ହୋଇଥିଲା । କାହାଣୀଗୁଡ଼ିକ କାଳକ୍ରମେ ଲୋକମୁଖରେ ଜୀବିତ । ଦେଶ ପ୍ରଚଳିତ କାହାଣୀ ଦେଶୀୟ ରୁଚିର ପରିମାପକ । ଏ ଗୁଡ଼ିକ ମଧ୍ୟରେ ରାଜପରିବାରଠାରୁ ଆରମ୍ଭ କରି ସାଧାରଣ ଲୋକସମାଜ, ଅସୁର ଅସୁରୁଣୀଠାରୁ ପଶୁପକ୍ଷୀ ପର୍ଯ୍ୟନ୍ତ ବିଭିନ୍ନ ବିଷୟ ଚିତ୍ରିତ । ଅଗନାଗ୍ନି ବନସ୍ତ ମଧ୍ୟରେ ବନ୍ଧୁମେଳରେ ରଜାପୁଅର ଦୁଃସାହସିକ ପ୍ରଣୟ ଅଭିଯାନଠାରୁ ଆରମ୍ଭ କରି ସାଧାରଣ ମନୁଷ୍ୟ ଚକୁଳିଆ ପଣ୍ଡାର ସୁଖ ଦୁଃଖ ଅଭାବ ଆଶା ଏଥିରେ ମନୋଜ୍ଞ ଅଭିବ୍ୟକ୍ତି ଲଭ କରିଥିଲା । କାହାଣୀଗୁଡ଼ିକରେ ଆବେଗ, ବିସ୍ମୟ, ଆକସ୍ମିକତା ସକଳ ନିହିତ ଥିବାରୁ କାହାଣୀ ପ୍ରତି ଶ୍ରୋତାମାନଙ୍କ ଆକର୍ଷଣ ସହଜରେ ଉଦ୍ଦୀପିତ ହୋଇଥାଏ । ଆଧୁନିକ କ୍ଷୁଦ୍ରଗଳ୍ପ ସୃଷ୍ଟି ପୂର୍ବରୁ ଏହି ଲୋକକାହାଣୀଗୁଡ଼ିକ ଲୋକ ସମାଜର ଗଳ୍ପକଥନ ଓ ଗଳ୍ପଶ୍ରବଣ ସ୍ପୃହା ଚରିତାର୍ଥ କରିଥିଲା ।

କ୍ଷୁଦ୍ରଗଳ୍ପ ଆଧୁନିକ କାଳରେ ଗଦ୍ୟ ସାହିତ୍ୟର ଏକ ଜନପ୍ରିୟ ବିଶିଷ୍ଟ ଶିଳ୍ପକର୍ମ । ଜୀବନର ପୂର୍ଣ୍ଣାଙ୍ଗ ଆଲେଖ୍ୟ ଅଙ୍କନ ପ୍ରୟାସରୁ ବିରତ ରହି ଗାଳ୍ପିକ ଏହାର ଖଣ୍ଡାଂଶକୁ ରସଘନ ରୂପ ଦିଅନ୍ତି । ବିସ୍ତୃତ ଜୀବନ ପ୍ରବାହ ମଧ୍ୟରୁ ଗୋଟିଏ ଦୁଇଟି ଭାସମାନ ମୁହୂର୍ତ୍ତ, ଏକ ସମୁଜ୍ଜ୍ୱଳ ଘଟଣା ବା ଏକ ନିର୍ବାଚିତ ଭାବବୃତ୍ତ ଅବଲମ୍ବନରେ କ୍ଷୁଦ୍ରଗଳ୍ପ ଲିଖିତ ହୁଏ । ଏଥିରେ ବହୁ ଘଟଣାର ଗ୍ରନ୍ଥନ, ବହୁ ପାତ୍ରପାତ୍ରୀଙ୍କ ସମାବେଶ ସମ୍ଭବ ନୁହେଁ । ସର୍ବନିମ୍ନ ପରିବେଶ, ସ୍ୱଳ୍ପତମ ବ୍ୟାପ୍ତି

ମଧ୍ୟରେ ସର୍ବାଧିକ କଳାଗତ ସୌନ୍ଦର୍ଯ୍ୟ ପ୍ରସ୍ଫୁଟନ, ସଂହତି ରକ୍ଷା, ଏକମୁଖୀ ପରିଣତିରେ ପହଞ୍ଚିବା କ୍ଷୁଦ୍ରଗଳ୍ପର ବିଶିଷ୍ଟତା । କ୍ଷୁଦ୍ରଗଳ୍ପ ଏକ ଲଘୁପକ୍ଷ ପ୍ରଜାପତି, ଏହା ଆଧୁନିକ ଜୀବନର ରୂପମୟ ଭାଷ୍ୟ । ଏଥିରେ ଆଧୁନିକ ଜଟିଳ ଜୀବନର ବିଶେଷ ମୁହୂର୍ତ୍ତ ଚିରନ୍ତନ ମୂଲ୍ୟବୋଧର ବ୍ୟଞ୍ଜନାରେ ରସାଣିତ ହୋଇଥାଏ ।

ଊନବିଂଶ ଶତାବ୍ଦୀରେ ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟର ବିଭିନ୍ନ ବିଭାଗ ଭଳି କ୍ଷୁଦ୍ରଗଳ୍ପର ସୃଷ୍ଟି ଓ ବିକାଶ ଘଟିଥିଲା । ସେ କାଳର ପାଠ୍ୟପୁସ୍ତକରେ ନୀତି କଥାର ସଂଯୋଜନ ମଧ୍ୟରେ କ୍ଷୁଦ୍ରଗଳ୍ପର ଆଦି ଅଭିବ୍ୟକ୍ତି ନିହିତ । ସଟନ୍ ସାହେବଙ୍କ ଅଭିଧାନର ବ୍ୟାକରଣ ଭାଗରେ କେତୋଟି ଫେବଲ ଅଛି । ଲେସୀ ସାହେବଙ୍କ ସହି ସେ ନୀତିକଥା ଲେଖିଥିଲେ । କଲିକତା ସ୍କୁଲ୍ ବୁକ୍ ସୋସାଇଟିରୁ ମଧ୍ୟ ଓଡ଼ିଆରେ ନୀତିକଥା ତିନି ଭାଗରେ ପ୍ରକାଶିତ ହୋଇଥିଲା । ନୀତିଶିକ୍ଷା ଦାନ ଏ ଗଳ୍ପ ବିନ୍ୟାସର ପ୍ରଧାନ ଉଦ୍ଦେଶ୍ୟ ।

ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ସାର୍ଥକ ଓଡ଼ିଆ କ୍ଷୁଦ୍ରଗଳ୍ପ ଫକୀର ମୋହନଙ୍କ ଦ୍ୱାରା ରଚିତ ହୋଇଥିଲା । ଜାତିମାନସର ଏକ ସଂଘର୍ଷମୟ ପରିସ୍ଥିତିରେ ଫକୀରମୋହନଙ୍କ ଗଳ୍ପଗୁଡ଼ିକର ସୃଷ୍ଟି । ଆପାତ ବିରୋଧୀ ପ୍ରାଚ୍ୟ ପାଶ୍ଚାତ୍ୟ ଶିକ୍ଷା, ସଂସ୍କୃତି ଓ ଚଳଣି ଜାତୀୟ ଜୀବନରେ ଏକ ଅସ୍ଥିର ମନୋଭାବ ସଞ୍ଚାର କରୁଥିଲା-ବେଳେ ଫକୀରମୋହନ ଗଳ୍ପଗୁଡ଼ିକରେ ଜାତିକୁ ଏକ ନିଶ୍ଚିତ ଗ୍ରହଣକ୍ଷମ ଆଦର୍ଶର ସୂଚନା ଦେଉଥିଲେ । ତାଙ୍କ ଗଳ୍ପଗୁଡ଼ିକ ମୁଖ୍ୟତଃ ସମାଜଧର୍ମୀ ଓ ସଂସ୍କାର-ମୁଖୀ । ଧର୍ମ ନାମରେ ପ୍ରବଞ୍ଚନା, ପାଶ୍ଚାତ୍ୟ ଶିକ୍ଷା ପ୍ରାପ୍ତ ମଧ୍ୟବିତ୍ତ ଯୁବକଙ୍କ ଅପରିଣାମ ଦର୍ଶିତା, ଶିକ୍ଷା ଓ ଆଧୁନିକତା ନାମରେ ପରମ୍ପରା ପ୍ରତି ଅଶ୍ରଦ୍ଧା, ବିବାହରେ କନ୍ୟା ଶୁଳ୍କ ପ୍ରଥା ସକଳ ତାଙ୍କ ଦୃଷ୍ଟିରେ ନିନ୍ଦିତ । କେତେକ ଗଳ୍ପ ବାଲେଶ୍ୱରର ସମୃଦ୍ଧ ନୌବାଣିଜ୍ୟ ଉପରେ ଆଧାରିତ । ଗଳ୍ପର ଶିଳ୍ପରୀତିରେ ଫକୀରମୋହନଙ୍କ ଲେଖନୀ ଏକ ପରୀକ୍ଷାମୂଳକ ସ୍ତର ମଧ୍ୟରେ ଗତି କରୁଥିଲା । କେତେକ ଗଳ୍ପ କାହାଣୀଧର୍ମୀ ହେଲେ ସୁଦ୍ଧା ଠାଏ ଠାଏ ଗଳ୍ପରେ ଆକସ୍ମିକତା ଓ ଉତ୍କଣ୍ଠା ସଞ୍ଚାର ପ୍ରୟାସ ସେ କରିଛନ୍ତି ।

ଫକୀରମୋହନଙ୍କ ପରେ ଚନ୍ଦ୍ରଶେଖର ନନ୍ଦ, ଦୟାନିଧି ମିଶ୍ର, ବାଞ୍ଛାନିଧି ପଟ୍ଟନାୟକ, ଚିନ୍ତାମଣି ମହାନ୍ତି, ଦିବ୍ୟସିଂହ ପାଣିଗ୍ରାହୀ, ଲକ୍ଷ୍ମୀକାନ୍ତ ମହାପାତ୍ର ପ୍ରଭୃତି ଗଳ୍ପ ରଚନାରେ କୃତିତ୍ୱ ପ୍ରଦର୍ଶନ କରିଥିଲେ । ଏ କାଳର ଗଳ୍ପଗୁଡ଼ିକରେ ପାରିବାରିକ ଜୀବନ, ସାମାଜିକ ସମସ୍ୟା, କିମ୍ବଦନ୍ତୀ ଓ ଜାତୀୟ ଇତିହାସ ରୂପଲାଭ କରିଥିଲା । ସାମାଜିକ ଜୀବନରୁ କୁସଂସ୍କାର, ଅନ୍ଧବିଶ୍ୱାସ ନିରାକରଣ, ମନୁଷ୍ୟର ଆବେଗ, ସ୍ନେହ ମମତା ଉପରେ ଗୁରୁତ୍ୱଦାନ, ଐତିହାସିକ ବିଷୟ ଅବଲମ୍ବନରେ ଜାତୀୟ ଗୌରବ ଉପସ୍ଥାପନ ଏ ଗଳ୍ପଗୁଡ଼ିକର ଉଦ୍ଦେଶ୍ୟ । ଆଖ୍ୟାନଭାଗ

ଚରିତ୍ରାକର୍ଷକ ଓ ଆବେଦନ ସରଳତାମୁଖୀ ହୋଇଥିବାରୁ ଗଳ୍ପଗୁଡ଼ିକ ହୃଦୟଗ୍ରାହୀ ।

ପରେ ପରେ ସତ୍ୟବାଦୀ ଗୋଷ୍ଠୀର ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର, ସବୁଜଗୋଷ୍ଠୀର କାଳନ୍ଦୀଚରଣ ପାଣିଗ୍ରାହୀ, ହରିଶ୍ଚନ୍ଦ୍ର ବଡ଼ାଲ, ଶରତ ମୁଖାର୍ଜି ଗଳ୍ପ ଲେଖାରେ କୃତିତ୍ୱ ଦେଖାଇଥିଲେ । ବିଂଶ ଶତାବ୍ଦୀର ଆଦ୍ୟପାଦରେ ପୁରାତନ ସମାଜ ଓ ମନୋଭାବର କ୍ରମବିଲୟ, ନବ ସମାଜ ଓ ମନୋବୃତ୍ତିର କ୍ରମଅଭ୍ୟୁଦୟ ଗଳ୍ପଗୁଡ଼ିକରେ ସୂଚିତ ହୋଇଥିଲା । ପ୍ରଥମ ମହାଯୁଦ୍ଧ ପରେ ସମାଜ ଜୀବନରେ ଯାନ୍ତ୍ରିକ ସଭ୍ୟତା ସହ କୃଷିଭିତ୍ତିକ ସଭ୍ୟତା, ନଗରଜୀବନ ସହ ପଲ୍ଲୀଜୀବନର ସଂଘର୍ଷ ଅନୁଭୂତ ହୋଇଥିଲା । ଆର୍ଥିକ ବଣ୍ଟନଗତ ବୈଷମ୍ୟ, ପ୍ରାଚୀନ କୌଳିକ ବୃତ୍ତିର ପରିବର୍ତ୍ତନ ଜନିତ ବିଡ଼ମ୍ବିତ ପରିସ୍ଥିତି ଗଳ୍ପଗୁଡ଼ିକରେ ଚିତ୍ରିତ । ଗଳ୍ପ ଲେଖକମାନେ ପୀଡ଼ିତ ମାନବାତ୍ମା ଓ ମାନବ ସମାଜର କ୍ରମବର୍ଦ୍ଧମାନ ସମସ୍ୟା ଉପରେ ଆଲୋକପାତ କରିଥିଲେ । ମାର୍କସ୍ ପ୍ରବର୍ତ୍ତିତ ସାମାଜିକ ଦର୍ଶନ-ଦ୍ୱାନ୍ଦ୍ୱିକ ଭୌତିକବାଦ ଲେଖକମାନଙ୍କୁ ପ୍ରଭାବିତ କରିଥିଲା । ଫଳତଃ ସାମାଜିକ ଶୋଷଣ, ପୁଞ୍ଜିବାଦ ବିପକ୍ଷରେ ବିଦ୍ରୋହ ବହୁ ଗଳ୍ପରେ ପ୍ରକାଶିତ । ସ୍ୱର୍ଗତ ଗୋଦାବରୀଶ ମହାପାତ୍ରଙ୍କ 'ମାଗୁଣିର ଶଗଡ଼, ପଟ୍ଟନାୟକେ ପଇସାଟିଏ' ଗଳ୍ପ ମଧ୍ୟରେ ଯନ୍ତ୍ର ସଭ୍ୟତା ପ୍ରତି ବିଦ୍ରୁପ ନିହିତ । ଗାଉଁଲି ସଡ଼କରେ ବସ ଚାଲିବା ହେତୁ ମାଗୁଣିର ଶଗଡ଼ କ୍ରମଶଃ ଉପେକ୍ଷିତ ହେଲା । କିନ୍ତୁ ଏ ତ ସାମାନ୍ୟ ଶଗଡ଼ ମାତ୍ର ନୁହେଁ । ମାଗୁଣିର ଜୀବନ ପ୍ରବାହ ସହ ଏହାର ସମ୍ପର୍କ ନିବିଡ଼ । ଏ ଶଗଡ଼ ମଧ୍ୟରେ ଗ୍ରାମ୍ୟ ଜୀବନର ବହୁ ସୁଖ ଦୁଃଖ ଆବେଗ ଅନୁଭୂତି ପୁଞ୍ଜିଭୂତ । ପଟ୍ଟନାୟକେ ପଇସାଟିଏ ଗଳ୍ପରେ ଦରିଦ୍ର ମାନବତାର କରୁଣ ଚିତ୍ର ଅଙ୍କିତ । ସବୁଜ ସାହିତ୍ୟ ସମିତି ଦ୍ୱାରା ପ୍ରକାଶିତ କାଳନ୍ଦୀଚରଣଙ୍କ 'ଦ୍ୱାଦଶୀ' ଗଳ୍ପସଙ୍କଳନ ମଧ୍ୟରେ ମାଂସର ବିଳାପ ଏକ ସାର୍ଥକ ଗଳ୍ପ । ପଶୁ ଜୀବନର ନିବିଡ଼ ବନ୍ଧୁତ୍ୱ । ବିସ୍ମୟକର ଆକର୍ଷଣ ଓ ଆତ୍ମତ୍ୟାଗ ଅବଲମ୍ବନରେ ରଚିତ ଏ ବର୍ଣ୍ଣନାତ୍ମକ ଗଳ୍ପ ପଢ଼ିଲାବେଳେ ସମାନ୍ତରାଳ ଦୃଷ୍ଟିକୋଣରୁ ଲିଖିତ ତାରାଶଙ୍କରଙ୍କ ବଙ୍ଗଳା 'କଳାପାହାଡ଼' ଗଳ୍ପ ମନେ ପଡ଼େ । ପୂର୍ବରୁ ପକ୍ଷୀଦ୍ୱୟଙ୍କ ଅନାବିଲ ଆକର୍ଷଣ ଚନ୍ଦ୍ରଶେଖର ନନ୍ଦଙ୍କ ପାରାବତୀ ଓ ପରେ କାହ୍ନୁଚରଣଙ୍କ 'ବୁଲି' ଶୀର୍ଷକ ଗଳ୍ପରେ ଅଙ୍କିତ । ଏ କାଳରେ ବ୍ରହ୍ମଦେଶରେ ପ୍ରବାସୀ ଓଡ଼ିଆଙ୍କ ଦୁଃଖ ଓ ଦୈନ୍ୟ 'ରେଙ୍ଗୁନଯାତ୍ରୀ' ଗଳ୍ପର ଆଖ୍ୟାନ ଭାଗ ।

ଆଧୁନିକ କାଳର ବୟସ୍କ ଲେଖକମାନଙ୍କ ମଧ୍ୟରେ ସଚ୍ଚିଦାନନ୍ଦ ରାଉତରାୟ, ଗୋପୀନାଥ ମହାନ୍ତି, ରାଜକିଶୋର ପଟ୍ଟନାୟକ, ସୁରେନ୍ଦ୍ର ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ରାଜକିଶୋର ରାୟ, ଅନନ୍ତପ୍ରସାଦ ପଣ୍ଡାଙ୍କ ନାମ ଉଲ୍ଲେଖଯୋଗ୍ୟ ।

ପଲ୍ଲୀଜୀବନର ଆଶା ଆକାଙ୍‌କ୍ଷା, ଚଳଣି କୁସଂସ୍କାର ଚରିତ୍ର ସଙ୍ଗକୁ ପଲ୍ଲୀବାସୀଙ୍କ ପ୍ରତି ସହାନୁଭୂତି ସଚ୍ଚିଦାନନ୍ଦଙ୍କ ବୈଶିଷ୍ଟ୍ୟ । ଗୋପୀନାଥ ମହାନ୍ତିଙ୍କ ଗଳ୍ପରେ ଆଧୁନିକ ମଧ୍ୟବିତ୍ତ ଜୀବନର ସମସ୍ୟା ସଫଳ ଭାବେ ଅଙ୍କିତ । ଗଳ୍ପର ବର୍ଣ୍ଣନାତ୍ମକତା ମଧ୍ୟ-ଦେଇ ଏକ ଏକ ପରିସ୍ଥିତିର ଅବିକଳ ଚିତ୍ର ଉପସ୍ଥାପନରେ କୃତିତ୍ୱ ବିଲକ୍ଷଣ । ରାଜକିଶୋର ପଟ୍ଟନାୟକଙ୍କ ଗଳ୍ପରେ ବିଷୟ ନିର୍ବାଚନରେ ସୂକ୍ଷ୍ମବୁଦ୍ଧି, ଉପସ୍ଥାପନାରେ ସୂଚନାତ୍ମକ କୌଶଳ ପରିଲକ୍ଷିତ । ସୁରେନ୍ଦ୍ର ମହାନ୍ତି ଆଧୁନିକ ଓଡ଼ିଆ ଗଳ୍ପ ସାହିତ୍ୟରେ ଜଣେ କୃତବିଦ୍ୟ ଶିଳ୍ପୀ । ବିଷୟ ଚୟନରେ ତାଙ୍କ ଦୃଷ୍ଟି ସୁଦୂର-ପ୍ରସାରୀ । ବୌଦ୍ଧଯୁଗରୁ ଆରମ୍ଭ କରି ଆଧୁନିକ ଯନ୍ତ୍ରନଗରୀର ଶ୍ରମକ୍ଳାନ୍ତ ଗୋଷ୍ଠୀଜୀବନ, କ୍ଷୟିଷ୍ଣୁ ସାମନ୍ତଗୋଷ୍ଠୀର ଜୀବନ ବିଳାସରୁ ଆରମ୍ଭ କରି ମଧ୍ୟବିତ୍ତ ଗୋଷ୍ଠୀର ବ୍ୟର୍ଥ ଆକାଙ୍‌କ୍ଷା ଓ ହତାଶାବାଦ ସକଳ ତାଙ୍କ ଗଳ୍ପର ପରିସରଭୁକ୍ତ । ମହାନଗରୀର ରାତ୍ରିର ଦୁରନ୍ତ ବିଭୀଷିକା, ସନ୍ତ୍ରାସବାଦର ଭୟାବହ ପରିବେଶ ମଧ୍ୟରେ ସେ ଆଧୁନିକ ସଭ୍ୟ ସମାଜର ରୁଗ୍‌ଣ ଓ ବିକଳ ପ୍ରାଣର ପରିଚୟ ପାଇଛନ୍ତି । ଭାଷାପ୍ରୟୋଗ, ପ୍ରକାଶଭଙ୍ଗୀ, ପରିବେଶ ସୃଷ୍ଟି ରସ ପରିବେଷଣ ସକଳ ଦିଗରୁ ତାଙ୍କ ଗଳ୍ପଗୁଡ଼ିକ ଏକାନ୍ତ ମନୋଜ୍ଞ । ରାଜକିଶୋର ରାୟଙ୍କ ଗଳ୍ପଗୁଡ଼ିକ ରୋମାଣ୍ଟିକ କଳ୍ପନା ବିଳାସରେ ବିଳସିତ । ଦୁଃଖପୀଡ଼ିତ ମାନବତା ପ୍ରତି ସହାନୁଭୂତିରେ ଏମାନେ ଆର୍ଦ୍ର । ଭାଷା ପ୍ରୟୋଗ ପାଟବ । ପରିବେଶ ସୃଷ୍ଟି ଚାତୁର୍ଯ୍ୟ ହେତୁ ତାଙ୍କ ଗଳ୍ପଗୁଡ଼ିକ ଉତ୍ତୀର୍ଣ୍ଣ । ସାମ୍ପ୍ରତିକ କାଳରେ ବହୁ ସୁଲେଖିକା ଓଡ଼ିଆ ଗଳ୍ପସାହିତ୍ୟର ସମୃଦ୍ଧିରେ ଲେଖନୀ ଚାଳନା କରି ପ୍ରତିଷ୍ଠା ଲାଭ କରିଛନ୍ତି । ସେମାନଙ୍କ ମଧ୍ୟରେ ସୀତାଦେବୀ ଖାଡ଼ଙ୍ଗା, ତ୍ରିବେଣୀ ଦେବୀ, ନନ୍ଦିନୀ ଶତପଥୀ, ବସନ୍ତକୁମାରୀ ପଟ୍ଟନାୟକ, ବୀଣାପାଣି ମହାନ୍ତି ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଅତି ଆଧୁନିକ କାଳରେ ବହୁ ତରୁଣ କୃତବିଦ୍ୟ ଶିଳ୍ପୀ କ୍ଷୁଦ୍ର ଗଳ୍ପ ରଚନାରେ ଅସାମାନ୍ୟ ସିଦ୍ଧିର ଅଧିକାରୀ । ଏମାନଙ୍କ ମଧ୍ୟରୁ ବହୁଲେଖକ ବିଶ୍ୱବିଦ୍ୟାଳୟର ଉଚ୍ଚଶିକ୍ଷା ଲାଭ ସୁଯୋଗ ପାଇଥିବାରୁ ବିଶ୍ୱସାହିତ୍ୟର ଅନ୍ୟାନ୍ୟ ବିଭାଗ ଅପେକ୍ଷା ସମଧିକ ସାଫଲ୍ୟ ଓ ସମ୍ମାନର ଅଧିକାରୀ ହୋଇଛୁ । ଏମାନଙ୍କ ଲେଖନୀରେ କ୍ଷୁଦ୍ର ଗଳ୍ପର ଆତ୍ମିକ ଓ ଆଙ୍ଗିକ ବିଭାବର ନାନା ପରୀକ୍ଷା ଚାଲିଅଛି । ଗଳ୍ପ ଆଖ୍ୟାନ ଭାଗର ପରିବେଶ ମଧ୍ୟ ଏ ଦେଶଠାରୁ ଆରମ୍ଭ କରି ସୁଦୂର ପାଶ୍ଚାତ୍ୟ ଜଗତ ପ୍ରତି ପ୍ରସାରିତ । ଶିକ୍ଷିତ ଓଡ଼ିଆ ଯୁବକର ଆଶା ଆକାଙ୍‌କ୍ଷା, ଅନୁଭୂତି ଓ ଚିନ୍ତା ପ୍ରବାହ କେବଳ ଓଡ଼ିଶାର ସୀମା ମଧ୍ୟରେ ଆବଦ୍ଧ ନ ରହି ସୁଦୂର ଆମେରିକା, ଇଂଲଣ୍ଡର ବୌଦ୍ଧିକ ପୀଠରେ ପରିବ୍ୟାପ୍ତ ହୋଇଛି । ଶିକ୍ଷିତ ଯୁବଚିତ୍ତର ଅଭିଜାତ ଅଭିବ୍ୟକ୍ତି ସଙ୍ଗକୁ, ଜୀବନ ସତ୍ୟର ମର୍ମୋଦ୍‌ଘାଟନ, ମାନସିକ ସଂଘର୍ଷର ବିଚିତ୍ର ପ୍ରକାଶ ଗଳ୍ପଗୁଡ଼ିକରେ ଦେଖିବାକୁ ମିଳେ । ବସ୍ତୁବାଦୀ ସମାଜ

ଚେତନା ଆଧୁନିକ କ୍ଷୁଦ୍ରଗଳ୍ପର ପ୍ରଧାନ ବୈଶିଷ୍ଟ୍ୟ । ମନସ୍ତତ୍ତ୍ୱର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ ଉପରେ ବହୁ ଲେଖକ ଗୁରୁତ୍ୱ ଦେଉଛନ୍ତି । ଚରିତ୍ରମାନଙ୍କର ମାନସିକ ସ୍ଥିତିର ବିଚିତ୍ର ଅଭିବ୍ୟକ୍ତି କେତେକ ଗଳ୍ପରେ ନିପୁଣ ଭାବେ ପ୍ରକାଶିତ ହୋଇ ଗଳ୍ପ ଆଖ୍ୟାନ ଭାଗ ଉପରେ ଗୁରୁତ୍ୱର ଉପଯୋଗିତା ହ୍ରାସ କରିଅଛି । କିଶୋରୀ-ଚରଣ ଦାସ, ବାମାଚରଣ ମିତ୍ର, ଅଖିଳମୋହନ ପଟ୍ଟନାୟକ, ଜେନାମଣି ନରେନ୍ଦ୍ର କୁମାର, ମହାପାତ୍ର ନୀଳମଣି ସାହୁ, କୃଷ୍ଣପ୍ରସାଦ ମିଶ୍ର, ଦୁର୍ଗାମାଧବ ମିଶ୍ର, ଅଚ୍ୟୁତାନନ୍ଦ ପତି, ପ୍ରମୁଖ ଆଧୁନିକ ଗଳ୍ପ ସୃଷ୍ଟିକୁ ବିଚିତ୍ର ଓ ସମୃଦ୍ଧ କରିଛନ୍ତି ।

ଆଧୁନିକ କ୍ଷୁଦ୍ରଗଳ୍ପ ଲେଖକମାନଙ୍କ ନିରବଚ୍ଛିନ୍ନ ସାଧନା, ସମାଜ ଓ ବ୍ୟକ୍ତିଜୀବନର ବ୍ୟାପକ ବିଶ୍ଳେଷଣ ପ୍ରବଣତା, ଜୀବନ ପ୍ରତି ଉଦାର ଦୃଷ୍ଟିଭଙ୍ଗୀ, ଚରିତ୍ରମାନଙ୍କ ମାନସିକ ଓ ବୌଦ୍ଧିକ ସ୍ତରର ବିସ୍ମୟକର ମର୍ମୋଦଘାଟନ, ଜୀବନର ବିଶ୍ୱାସ ଆନନ୍ଦ ସଙ୍ଗକୁ ବେଦନା ଓ ବ୍ୟର୍ଥତାର ଯଥାଯଥ ଚିତ୍ରଣ, ମାନବିକ ସମ୍ବେଦନଶୀଳତା ଓ ରସ ସୌନ୍ଦର୍ଯ୍ୟ ପରିବେଷଣ ପଟୁତା ଓଡ଼ିଆ କ୍ଷୁଦ୍ରଗଳ୍ପର ସମୃଦ୍ଧିର ହେତୁ ଏ ସମୃଦ୍ଧି ଓ ପ୍ରାଚୁର୍ଯ୍ୟ ଓଡ଼ିଆ କ୍ଷୁଦ୍ରଗଳ୍ପର ଏକ ଗୌରବାବହ ବିଶିଷ୍ଟତା ।

(ଆକାଶବାଣୀ, କଟକ କେନ୍ଦ୍ର ସୌଜନ୍ୟରୁ)

———

# 'ମଗ୍ଲର ମୃତ୍ୟୁ' ଓ ଗାଳ୍ପିକ ସୁରେନ୍ଦ୍ର

ଅଧ୍ୟାପକ ପୀତାମ୍ବର ପ୍ରଧାନ, ଏମ୍.ଏ.

'ମଗ୍ଲର ମୃତ୍ୟୁ' ଗଳ୍ପଟିକୁ ବିଗ୍ଚର କରିବା ସମୟରେ ଗାଳ୍ପିକ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କର ସଂଘାତ-ସଂକୁଳ ଜୀବନର ପ୍ରତିଚ୍ଛବି ଦୃଷ୍ଟିପଥକୁ ଆସିବା ସ୍ୱାଭାବିକ । କାରଣ ତାଙ୍କର ଗଳ୍ପସାହିତ୍ୟର ବିକାଶଧାରା, ବହୁ ଆବର୍ତ୍ତନ ଓ ବିବର୍ତ୍ତନ ମଧ୍ୟଦେଇ ଯେପରି ଏକ ବୃତ୍ତାକାର ପଥ ଧରି ଗ୍ଚଲିଛି ; ତାଙ୍କର ବ୍ୟକ୍ତି-ଜୀବନର କ୍ରମବିକାଶ, ପ୍ରାପ୍ତ ସେହିପରି ଉତ୍ଥାନ, ପତନ; ନିଃସଙ୍ଗତା, ଶୂନ୍ୟତା ଓ ବେଦନାବୋଧର ବୃତ୍ତ କହିଲେ ଚଳେ । ଦ୍ୱିତୀୟ ମହାଯୁଦ୍ଧର ପରବର୍ତ୍ତୀ ଓଡ଼ିଆ * କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ସେ ବହୁଦୃଷ୍ଟିରୁ ନୂତନ ଚେତନାର ଆବାହକ । ପ୍ରସ୍ତୁତ ପ୍ରବନ୍ଧର କ୍ଷୁଦ୍ରତା ଦୃଷ୍ଟିରୁ ସେ ସମସ୍ତର ଆଲୋଚନା ଏ ସ୍ଥଳରେ ସମ୍ଭବ ନୁହେଁ । ତେବେ ସଂକ୍ଷେପରେ କହିଲେ, ବିଂଶ ଶତାବ୍ଦୀର ସପ୍ତ-ଦଶକରେ ଯେଉଁ ଭାବପ୍ରଧାନ, 'ଗଳ୍ପହୀନ ଗଳ୍ପ'ର ଆଭିମୁଖ୍ୟ ଓଡ଼ିଆ ସାହିତ୍ୟରେ ଦେଖାଦେଇଛି, ତାହାର ପରୀକ୍ଷା ନିରୀକ୍ଷା ସୁରେନ୍ଦ୍ରଙ୍କର ଚତୁର୍ଥ ଦଶକରେ ଲିଖିତ "ଭାରତ-ଆବିଷ୍କାର" ଓ "ଅଷ୍ଟ୍ରେଲିଆ" ପ୍ରଭୃତିରେ ଆରମ୍ଭ ହୋଇଥିଲା । 'ସ୍ଥିତି'ବିରୁଦ୍ଧରେ ଆଜିର ବିଦ୍ରୋହ ଗାଳ୍ପିକଙ୍କର ସେ ସମୟର ଗଳ୍ପଗୁଡ଼ିକରେ ମଧ୍ୟ ଲକ୍ଷ୍ୟ କରାଯାଇପାରେ । ଷଷ୍ଠ-ଦଶକ ଆଡ଼କୁ ଏହା ଚରିତ୍ର ଓ ଘଟଣା ପ୍ରଧାନ ହୋଇ ପୁଣି ସାମ୍ପ୍ରତିକ ପରିବେଶରେ ଏହା ଆତ୍ମସଧର୍ମୀ ଓ ଭାବପ୍ରଧାନ ହୋଇଉଠୁଛି । ସୁତରାଂ ତାଙ୍କର ଗାଳ୍ପିକଜୀବନ ତାଙ୍କୁ ପ୍ରାରମ୍ଭକାଳ, ଯେଉଁ ଭାବ-ପ୍ରଧାନତାକୁ ଆଶ୍ରୟ କରି ଗଢ଼ି ଉଠିଥିଲା, 'ମଗ୍ଲର ମୃତ୍ୟୁ' ଗ୍ରନ୍ଥର ପ୍ରକାଶ ସମୟରୁ ତାହା ମଧ୍ୟବର୍ତ୍ତୀ କାଳର 'ଚରିତ୍ର ଓ ଘଟଣା ପ୍ରଧାନତା'କୁ ବାଦ୍‌ଦେଇ ପୁଣି ସେହି ଭାବ-ବିନ୍ଦୁ ଆଡ଼କୁ ବୃତ୍ତାକାର ଗତି କରୁଥିବା ଅନୁମିତ ହୁଏ ।

ଓଡ଼ିଆ ଗଳ୍ପ ସାହିତ୍ୟରେ ସେ ମଧ୍ୟ 'ସିମ୍ବଲିଜମ୍' (ଭାବରୂପର-ପ୍ରତୀକ)ର ପ୍ରବର୍ତ୍ତକ । ଆଲୋଚ୍ୟାଧୀନ (ମଗ୍ଲର ମୃତ୍ୟୁ) ଗଳ୍ପ ଭଳି ତାଙ୍କର ଅଧିକାଂଶ ଗଳ୍ପରେ ଊଣା ଅଧିକେ କୌଣସି ନା କୌଣସି ପ୍ରତୀକ-ଚେତନା ଲକ୍ଷ୍ୟ କରାଯାଇ

---

* ଅଧିକ ଆଲୋଚନା ପାଇଁ ଦ୍ରଷ୍ଟବ୍ୟ—ନିକଟରେ ପ୍ରକାଶ ପାଉଥିବା ମୋ ରଚିତ "କଥାକାର ସୁରେନ୍ଦ୍ର" ଯାହାର ଆଶ୍ରୟ ଓ ଅବଲମ୍ବନରେ ଏ ପ୍ରବନ୍ଧଟି ଲିଖିତ ।

ପାରେ । ଏହା ଭିନ୍ନ 'ମସ୍ୱଲର ମୃତ୍ୟୁ' ଗଳ୍ପ ଓ ପୁସ୍ତକରେ ଦେଖା ଦେଇଥିବା ଆତ୍ମସଚେତନତା, ଏହାର ପୂର୍ବ ସୃଷ୍ଟି ''ସବୁଜ ପତ୍ର ଓ ଧୂସର ଗୋଲାପ''ରେ ଆଦୌ ବିରଳ ନୁହେଁ । ଅବଶ୍ୟ ଏହା ସ୍ୱୀକାର୍ଯ୍ୟ ଯେ ''ସବୁଜ ପତ୍ର ଓ ଧୂସର ଗୋଲାପ''ର ଆତ୍ମ ସଚେତନତା ୧୯୫୮-୭୨ ('ମସ୍ୱଲର ମୃତ୍ୟୁ'-ସନ୍ନିବିଷ୍ଟ ଗଳ୍ପଗୁଡ଼ିକର ରଚନା କାଳ) ମଧ୍ୟରେ ଓ ତତ୍‌ପରବର୍ତ୍ତୀ କାଳରେ ଅଧିକ ନିବିଡ଼ ଓ ବୁଦ୍ଧିଦୀପ୍ତ । ଯେ ଜନା-ଯୁଗର ଭାରତ ଓ ଉତ୍କଳକୁ ସେ ଗଭୀର ଅନ୍ତର୍ଦୃଷ୍ଟି ସହିତ ବିଗ୍ଭର କରିଅଛନ୍ତି । ଯନ୍ତ୍ର ସଭ୍ୟତାର ଉତ୍‌ପୀଡ଼ନ, ନିର୍ବାଚନ ସମ୍ବଳ-ରାଜନୀତି, ଯୋଜନା କାଳର ଅର୍ଥନୈତିକ ବୈଷମ୍ୟ ଓ ଦୁଃସ୍ଥ ବ୍ୟକ୍ତି ଜୀବନ, ତାଙ୍କୁ ବହୁ ସ୍ଥଳରେ ସ୍ରଷ୍ଟାର ଆସନରୁ ସମାଲୋଚକର ଆସନକୁ ଓହ୍ଲାଇ ଆସିବାକୁ ବାଧ୍ୟ କରିଛି । ସମଷ୍ଟିଗତ ଚେତନାରେ କପଟ ଧ୍ୱଂସର ଚକ୍ର ଖେଳି ବୁଲୁଛି, ତାହା ସେ ମର୍ମେ ମର୍ମେ ଉପଲବ୍ଧି କରିଛନ୍ତି । ଉକ୍ତ ପ୍ରୟୋଜନବୋଧର ଅନୁରୋଧରେ 'କୃଷ୍ଣଚୂଡ଼ା'ର ତନ୍ମୟ ଶିଳ୍ପୀ, ''ମସ୍ୱଲର ମୃତ୍ୟୁ''ରେ ସଚେତନ ଶିଳ୍ପୀରେ ପରିଣତ ହୋଇଛନ୍ତି ଓ ପାଶ୍ଚାତ୍ୟ ସାହିତ୍ୟର ଚେତନା ଧର୍ମୀ (stream of consciousness) ଲେଖକମାନଙ୍କର ମନୋବୈଜ୍ଞାନିକ ବାସ୍ତବତା ଓ ବୌଦ୍ଧିକତାର ଗ୍ଭୟା ତାଙ୍କର ଏହି କୃତିର ବହୁ ଅଂଶରେ ଦର୍ଶନୀୟ ।

ସ୍ଥୂଳତଃ, ମସ୍ୱଲର ମୃତ୍ୟୁ ଗଳ୍ପଟି ଗଭୀର ମନସ୍ତାତ୍ତ୍ୱିକ ରହସ୍ୟ ଉପରେ ଲିପିବଦ୍ଧ । ଏ ଗଳ୍ପଟି ଯୁଗମାନସର ଏକ ନିର୍ଭୁଲ ପ୍ରତିକୃତି । ଯୁଗ ପରିବର୍ତ୍ତନ ସଙ୍ଗେ ରୁଚି ପରିବର୍ତ୍ତନ ଘଟୁଥିଲେ ମଧ୍ୟ ସାଧାରଣ ଜନତାକୁ ଏହା ଛୁଇଁ ପାରିନାହିଁ । ପ୍ରାଚୀନ ବିଶ୍ୱାସର ସରଳତା ଭିତରେ ଯୁଗଯୁଗର 'ମସ୍ୱଲ' ଖେଳି ବୁଲୁଛି । ନିରୀହ ଆତ୍ମବିଶ୍ୱାସର ଏ ହଂସ ମଧ୍ୟରେ ଦ୍ୱନ୍ଦ୍ୱ ନାହିଁ, ସଂଘର୍ଷ ନାହିଁ — କେବଳ ଆତ୍ମବିସ୍ମୃତି । ସବୁ ସଂସ୍କାର ଓ ଅସଂସ୍କାର ଭୁଲି ଜୀବନ ଭିତରେ ଡୁବି-ଯିବାର ମାଦକତାକୁ ଲେଖକ ଅତି ସ୍ୱଚ୍ଛ ଭାବରେ ଏ ସ୍ଥଳରେ ଅଙ୍କନ କରିପାରିଛନ୍ତି । ଜି. ବି. ଆର୍. ଡ଼ିଭିଜନର ରେଲପଥ ନିର୍ମାଣ ବା ବୁଲ୍‌ଡୋଜର୍‌ର ପ୍ରଚଣ୍ଡ ଆଘାତରେ ଏହା ଖଣ୍ଡିତ ହୋଇନାହିଁ । ବରଂ ବାସ୍ତବବାଦୀ ଇଞ୍ଜିନିୟର୍‌ ଓ ଓଭରସିଅରମାନଙ୍କ ମଧ୍ୟରୁ ଜଣେ ଅଧେ ଏହାର ପୋଷକତା କରିଛନ୍ତି । କଳ୍ପନା ଓ ବାସ୍ତବତା ମଧ୍ୟରେ ଏହିଠାରୁ ସଂଘର୍ଷ ଆରମ୍ଭ ହୋଇଛି । ସଂଶୟାକ୍ରାନ୍ତ ବାସ୍ତବତା, ଲୋକଚକ୍ଷୁର ଏ ଉଦ୍‌ବେଳନର ଉତ୍ତର ଦେଇପାରିନାହିଁ ନା ନିଜେ ନିଜକୁ ତୃପ୍ତ କରିପାରିନାହିଁ । ପ୍ରାଚୀ ଓ କୋଇଲି ଧାରର ଭାବ-ବିହ୍ୱଳତା, ଏ ନୀରସ ବାସ୍ତବତା ଠାରୁ ଅଧିକ କାମ୍ୟ ବୋଲି କଥାକାର ହୁଏତ ପରୋକ୍ଷରେ ସ୍ୱୀକାର କରିଛନ୍ତି । 'ବାଉ୍‌ବଚୁରେଟ୍‌' ଗିଳି ନିଦଯାଇଥିବା ତରୁଣ ଇଂଜିନିୟର୍‌ ସୁବୋଧର ଅବଚେତନ ଜଗିଆରେ ଜଡ଼ବାଦର ରୁକ୍ଷ ଯନ୍ତ୍ରଣା ସାର୍ଥକ ଭାବରେ ରୂପାୟିତ ହୋଇଛି । ଫ୍ରୟେଡ଼ଙ୍କର 'ଲିବିଡ଼ୋ' ବା କାମପ୍ରବୃତ୍ତିକୁ ଲେଖକ ଜୀବନ ଭୂମିକାରେ

ସ୍ୱରୁତ୍ୱ ଆରୋପ କରି ଏହା ସାହାଯ୍ୟରେ ଆଧୁନିକ ମାନସର ଅବ୍ୟକ୍ତ ଯନ୍ତ୍ରଣା ପ୍ରକାଶ କରିବାକୁ ସମର୍ଥ ହୋଇଛନ୍ତି । ଶୁଦ୍ଧାଭକ୍ତିର ସହଜ ପ୍ରେମ ମାର୍ଗର ଅବତାରଣା, ଏ ଦୃଷ୍ଟିରୁ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

ଗାଲ୍‌ବ୍ରେଥଙ୍କ ମତରେ କଳ୍ପନା ବିହୀନ ବାସ୍ତବତାର ଅଭିଯାନରେ ମନୁଷ୍ୟ ତାହାର ପ୍ରାଚୀନ ବିଶ୍ୱାସର ରୂପରସ ଓ ରଙ୍ଗର ଦୁନିଆକୁ ହରାଇ ଆଜି ଅତ୍ୟନ୍ତ ନିଃସହାୟ ଓ ଆରଣ୍ୟ ହୋଇପଡ଼ିଛି । ସଜ୍ଞାନ ଚେଷ୍ଟା ଓ କୃତ୍ରିମ ଅଭିମାନ ଫଳରେ ଆମେ ସମସ୍ତେ ଅସାଧାରଣ ସ୍ପର୍ଶ କାତରତା ପୀଡ଼ିତ ସାୟୁବିକ ରୋଗୀ (neurotic patient)ରେ ପରିଣତ ହୋଇଛେଁ । ବାହାରକୁ ଯେତେ ଦୃଢ଼ ବୋଲି ପରିଚୟ ଦେଉଥିଲେ ମଧ୍ୟ ଆମ ମନ ମଧ୍ୟରେ ଅତୃପ୍ତି ଓ ଅଦୃଢ଼ତାର ଗୋଟାଏ ଚିରନ୍ତନ ଜ୍ୱାଳା କ୍ରମେ କ୍ରମେ ବୃଦ୍ଧିଲାଭ କରୁଛି । ପ୍ରାକୃତିକତାର ପଥରୋଧ କରି ଏ ଶତାବ୍ଦୀର ସଭ୍ୟ ମନୁଷ୍ୟ, ସୁବୋଧ ପରି ବାରମ୍ବାର ଅଚରିତାର୍ଥର ଶିକାର ହେଉଛି । ସୁନ୍ଦରର କବିକୁ ଯୁକ୍ତି ଓ ସଂସ୍କାର ନାଁରେ ଫାଙ୍କି ଦେବାର ପ୍ରାୟଶ୍ଚିତ୍ତ କି ଭୟଙ୍କର, ତାହା ସୁବୋଧ ଚରିତ୍ରରେ ପ୍ରତିଫଳିତ । ଗଳ୍ପଟିର ଅନ୍ତର୍ଚେତନାରେ ଏହା ମୁଖ୍ୟ ପ୍ରତିପାଦ୍ୟ ଭାବରେ ଗୃହୀତ । ବିଷୟବସ୍ତୁରେ ଉପଦୃଶ୍ୟରୂପେ ସଂଯୁକ୍ତ, ସିଦ୍ଧ ନିରଂଜନଙ୍କର ଜୀବନ ବା ଯୋଗଭକ୍ତି ଓ ପ୍ରେମଭକ୍ତିର ଦୀର୍ଘ ବର୍ଣ୍ଣନା, ଆପାତତଃ ଅନାବଶ୍ୟକ ବୋଧହେଉଥିଲେହେଁ ଅବଚେତନର ଐତିହାସିକ ପରଂପରା ନିର୍ଣ୍ଣୟ କରିବାକୁ ଏହା ସମର୍ଥ । ଏହା ଆଶ୍ରୟରେ ଜନଚିତ୍ତର ଜୈବିକ ପ୍ରୟୋଜନ ବୋଧକୁ ସ୍ପଷ୍ଟ କରାଯାଇଥିଲେ ମଧ୍ୟ ଲେଖକ ଏ କ୍ଷେତ୍ରରେ ପାଠକମାନଙ୍କର ଉପସ୍ଥିତିକୁ ସଂପୂର୍ଣ୍ଣରୂପେ ଭୁଲିଯାଇଛନ୍ତି । ତେଣୁ ପାଠକ ସଚେତନତା ଅଭାବରେ ଗଳ୍ପ, ତାହାର ସ୍ୱାଭାବିକ ଗତି ଓ ସାବଲୀଳତା ହରାଇ ବସିଛି । ଏହା ଭିନ୍ନ ଅନ୍ୟାନ୍ୟ ଦିଗରୁ ଗଳ୍ପଟି ପ୍ରାୟ ସାର୍ଥକ । କଥାବସ୍ତୁ ନିହିତ ଚରିତ୍ର ଓ ସେମାନଙ୍କର ନାଟକୀୟ ଭଙ୍ଗି ପ୍ରତ୍ୟୁକ୍ତିରେ ମୌଳିକତାର ସ୍ୱାକ୍ଷର ପରିଲକ୍ଷିତ ହୁଏ । ଉତ୍କଳୀୟ ପଲ୍ଲୀଜୀବନର ଚଳଣି ଭିତରେ ବଂଚିବାର ସ୍ୱଚ୍ଛନ୍ଦତା, ଲେଖକଙ୍କୁ ବିମୋହିତ କରିଥିବା ଅସମ୍ଭବ ନୁହେ । ଅତୀତକୁ ସେ ପ୍ରାଣଭରି ଉପଭୋଗ କରିଛନ୍ତି ଓ ସମ୍ମାନ ଦେଇଛନ୍ତି । ଯୁଗାଦର୍ଶର ଅସାରତା ପ୍ରତି ସେ ପାଠକପାଠିକାମାନଙ୍କର ଦୃଷ୍ଟି ଆକର୍ଷଣ କରିଅଛନ୍ତି । ଅତୀତର ଅବଦାନକୁ ଅଂଧବିଶ୍ୱାସ କହି ଉପେକ୍ଷା କରିବାଦ୍ୱାରା ଆମର ଚିନ୍ତାହୀନତା ବଢ଼ିଚାଲିଛି; ଅଥଚ ବାସ୍ତବତାର ଖିଅ ଧରି ଜୀବନପାଇଁ ସମାଧାନ ଖୋଜିବା ଆମ ପକ୍ଷରେ ସମ୍ଭବ ହୋଇନାହିଁ । ଏଣୁ ସ୍ୱ-ସଂସ୍କୃତିର ପରିଚୟରେ ଆମର ବାସ୍ତବ ପରିଚୟ, ଏହା ନାନା ଭଂଗୀରେ ଗଳ୍ପର ମର୍ମବିନ୍ଦୁରେ ଅଙ୍କିତ । ଅଳ୍ପରେ କହିଲେ ପୁରାତନର ନିର୍ଗ୍ରାହ୍ୟ ଆତ୍ମପ୍ରତ୍ୟୟ ଓ ନୂତନର ସ୍ଥିତିଶୂନ୍ୟ ବାସ୍ତବତାଭିତରେ ଲଢିଚାଲିଥିବା ମାନସିକ ସଂଘର୍ଷର ଚିତ୍ରରେ ଗଳ୍ପଟି ପ୍ରାଣବନ୍ତ ହୋଇଉଠିଛି ।

---

# ସାମୟିକ ଗଳ୍ପ ସଂକଳନ (୧) : ମୋ ଦୃଷ୍ଟିରେ

**ଶ୍ରୀ ବିଜୟଚନ୍ଦ୍ର ଦାସ**, ଏମ୍. ଏ., ଏଲ୍‌ଏଲ୍. ବି., ଡ଼ି. ଏସ୍, ଡବ୍ଲ୍ୟୁ

ଓଡ଼ିଆ କ୍ଷୁଦ୍ରଗଳ୍ପର ପ୍ରାରମ୍ଭ ପ୍ରାଚୀନ ନୁହେଁ, ଏହାର ଜନ୍ମଦାତା ଔପନ୍ୟାସିକ ଫକୀରମୋହନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହା ପ୍ରଥମେ କାହାଣୀ ଆକାରରେ ଜନ୍ମନେଇ ଲୋକମୁଖରୁ ଆଈମା' ସନ୍ଧ୍ୟାବେଳେ ନାତିନାତୁଣୀମାନଙ୍କୁ ଗଳ୍ପଛଳରେ କାହାଣୀ ଶୁଣାଇବାରୁ କାଳକଳମର ଆଶ୍ରୟ ନେଲା, ଉତ୍କଳ କାହାଣୀ, ବାରବୁଲା କାହାଣୀ, ଗପପେଡ଼ି ଇତ୍ୟାଦିରେ ।

ପ୍ରଥମ କ୍ଷୁଦ୍ର ଗଳ୍ପ କେବେ ଆରମ୍ଭ ହେଲା ତାହା ନିର୍ଦ୍ଦିଷ୍ଟ ଭାବରେ କହିବା ସମ୍ଭବ ନୁହେଁ । ସ୍ୱର୍ଗୀୟ ବିଶ୍ୱନାଥ କରଙ୍କ ସମ୍ପାଦିତ "ଉତ୍କଳ ସାହିତ୍ୟ" ମାସିକ ପତ୍ରିକାରେ କ୍ଷୁଦ୍ର ଗଳ୍ପର ବହୁଳ ପ୍ରସାର ଲାଭ କରିଥିଲା । ତାହା ପରେ ପରେ ବାରୁଣୀ, ମଧୁଚକ୍ର, ସହକାର, ଯୁଗବାଣୀ ଇତ୍ୟାଦିରେ କାଳିନ୍ଦୀଚରଣ, ଅନ୍ନଦାଶଙ୍କର, ଭଗବତୀ, ସଚ୍ଚି ରାଉତରାୟ ପ୍ରଭୃତି ଗାଳ୍ପିକମାନଙ୍କର କ୍ଷୁଦ୍ର ଗଳ୍ପ ପ୍ରକାଶ ପାଇଥିଲା ।

କ୍ଷୁଦ୍ର ଗଳ୍ପର ଉଦ୍ଦେଶ୍ୟ ସବୁ ଶ୍ରେଣୀର ପାଠକମାନଙ୍କୁ ଅବସର ବିନୋଦନ ପାଇଁ କିଞ୍ଚିତ ଆନନ୍ଦ ଯୋଗାଇବା—କ୍ଷୁଦ୍ର ପରିସର ମଧ୍ୟରେ ଟିକିଏ ଆନନ୍ଦ ଦେବା । ପାଠକ ଦୈନନ୍ଦିନ ଜୀବନର ବସ୍ତୁବାଦୀତା ( Naturalistic ) ମଧ୍ୟରୁ କ୍ଷଣିକ ସକାଶେ ମୁକ୍ତ ହୋଇ ଜୀବନକୁ ଉପଭୋଗ କରିବା ମାନସରେ ଏହାର ଆଶ୍ରୟ ନିଏ ।

ସେଥିସକାଶେ କ୍ଷୁଦ୍ର ପରିସର ମଧ୍ୟରେ ଓ ଅଳ୍ପ ସମୟରେ ଟିକିଏ ଆନନ୍ଦ ପରିବେଷଣ କରିବା ଲେଖକର ଧର୍ମ ହେବା ବିଧେୟ । ଭାଷା ଓ ଭାବର ଶୈଳୀ ଏପରି ହେବା ଉଚିତ ଯଦ୍ୱାରା ପାଠକ ଜୀବନକୁ ସରସ କରିବା ସଙ୍ଗେ ସଙ୍ଗେ ଜୀବନ ଝଙ୍କାର ଦୁର୍ବିସହତାରୁ, ମନର ଗ୍ଲାନି ଦୂର କରିବାକୁ କେତେକାଂଶରେ ସକ୍ଷମ ହୋଇପାରିବେ ।

ତେଣୁ କ୍ଷୁଦ୍ର ଗଳ୍ପ ଜୀବନଧର୍ମୀ । ବାସ୍ତବତା ଉପରେ ଲେଖାଯିବା ଆବଶ୍ୟକ । କ୍ଷୁଦ୍ର କ୍ଷୁଦ୍ର ଦୈନନ୍ଦିନ ଘଟଣାକୁ ନେଇ ଲେଖକ ନିଜର ଲିଖନ ଶୈଳୀରେ, କଲମର ମୁନରେ ରୂପ ଦେବେ ଯଦ୍ୱାରା ତାହା ଦୁର୍ବୋଧ୍ୟତାରୁ ବହୁତ ଦୂରରେ ରହି ସବୁଶ୍ରେଣୀପାଠକମାନଙ୍କର ସୁଖପାଠ୍ୟ ଓ ସହଜବୋଧ ହୋଇ ପାରିବ ।

ଇଂରାଜରେ ଅଧୁନା ବହୁ ପରୀକ୍ଷା ନିରୀକ୍ଷା ପରେ କ୍ଷୁଦ୍ର ଗଳ୍ପ ନାଚଦୀର୍ଘତାରୁ ଦୂରରେ ରହି ସ୍ୱଳ୍ପତା ମଧ୍ୟରେ ସରଳ ଭାଷା ଓ ଭାବ ଶୈଳୀରେ ରୂପ ନେବାରେ ଦେଖାଯାଉଛି । ଶଡ଼ର ଡାଇଜେଷ୍ଟ, ମିରର, କାରଭ୍ୟାନ ପ୍ରଭୃତ ଇଂରାଜ ମାସିକ ପୁସ୍ତକରୁ ଏହାର ପ୍ରମାଣ ମିଳେ ।

ଅଧୁନା ଓଡ଼ିଆରେ ଗଳ୍ପ ସଂକଳନ କେତୋଟି ପର ପର ପ୍ରକାଶ ପାଇବା ସୁଖର କଥା । ଗଳ୍ପସଂକଳନ (୧) ଏ ଦିଗରେ ଅଗ୍ରଣୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ନାଚଦୀର୍ଘତାରୁ ଦୂରରେ ରହି ଭାଷା, ଭାବ, ଘଟଣାବହୁଳତାକୁ ନୂତନ ଛାଞ୍ଚରେ ରୂପ ଦେବାରେ ଯେ ସଫଳତା ହାସଲ କରିଛି ଏଥିରେ ଦ୍ୱିମତ ହେବାରେ ଅବକାଶ ନାହିଁ । ଏହା ପାଠକ ମନରେ ଗଭୀର ରେଖାପାତ (Effect) କରିବା ସଙ୍ଗେ ସଙ୍ଗେ ସାମୟିକ ଆନନ୍ଦ ( Pleasure of reading ) ଦେବାରେ ଅଗ୍ରଣୀ ହୋଇ ପାରିଛି । ଏପରି ସମ୍ଭବ ହୋଇପାରିଛି କେବଳ ଯେ ପୁରାତନ ଗାଳ୍ପିକମାନଙ୍କ ସହଯୋଗରେ ତାହା ନୁହେଁ—ନୂତନ ଲେଖକମାନଙ୍କର ସଯତ୍ନ ଐକାନ୍ତିକତା ଏହାକୁ ସଫଳତା ହାସଲ କରିବାରେ ଆଗେଇ ନେଇଛି ।

ଏହାର ଉତ୍ତରୋତ୍ତର ଉନ୍ନତି ପାଇଁ ଆବଶ୍ୟକ ସଂଘବଦ୍ଧ ଉଦ୍ୟମ, ବହୁଳ-ପ୍ରସାର ଓ ଉପଯୁକ୍ତ ଗବେଷଣା । ଇଂରାଜ ବା କ୍ଷୁଦ୍ର ଗଳ୍ପ ଛାଞ୍ଚରେ ଲେଖିବାକୁ ଅଭ୍ୟାସ କଲେ ଭାରତରେ ଅନ୍ୟାନ୍ୟ ଭାଷାରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ କ୍ଷୁଦ୍ର ଗଳ୍ପ ଅନୁବାଦ ପ୍ରକାଶ କଲେ ଲେଖକ ସଫଳକାମ ହୋଇପାରିବେ ।

ନିଜେ ଅଙ୍ଗେ ନିଭାଇଥିବା ନିଜର ଅଭିଜ୍ଞତା-ପ୍ରସୂତ—ପ୍ରଥମ ପୁରୁଷରେ (First Person) ଲେଖିବା ପ୍ରଣାଳୀ ଆଧୁନିକ ଗଳ୍ପ ସାହିତ୍ୟରେ ଦେଖିବାକୁ ମିଳେ । ଏହାର ଲିଖନ ରୀତି ବିଭିନ୍ନ ପ୍ରକାରର ଓ ଶୈଳୀର ମଧ୍ୟ । ଏପରି ନୂତନ-ତାକୁ କ୍ଷୁଦ୍ରଗଳ୍ପ ସଂକଳନ ତାଙ୍କର ପରବର୍ତ୍ତୀ ସଂଖ୍ୟାରେ ସ୍ଥାନ ଦେଲେ ପାଠକ-ମାନଙ୍କର ମନୋରଞ୍ଜନ ନିଶ୍ଚିତ ଭାବରେ ହୋଇପାରିବ ।

ଏହାର ନାମକରଣ ମଧ୍ୟ କାଳୋଚିତ ହୋଇଛି । 'ସାମୟିକ ଗଳ୍ପ ସଂକଳନ' ଦ୍ୱାରା ବୁଝାଏ—ସମୟ ସମୟରେ ପ୍ରକାଶିତ ଗଳ୍ପର ସମଷ୍ଟି । ତେବେ ଏହି ସମୟର ବ୍ୟବଧାନ ବେଶି ନ ହୋଇ ନିକଟବର୍ତ୍ତୀ ହେବା ଦରକାର ।



# ଦୂତ ଓ ଦୂତୀ

● ଶ୍ରୀ ଭୂପେନ୍ ଗୋସ୍ୱାମୀ

ଚିଠି ଖଣ୍ଡିକ ପଢ଼ି ସାରି କେତକୀ କେତୋଟି ମୁହୂର୍ତ୍ତଯାଏ ସ୍ତମ୍ଭିତ ହୋଇ ବସିଲା । ପତ୍ରଟିକୁ ପ୍ରେମପତ୍ର ବୋଲି ମନେ ନହେଲେ ମଧ୍ୟ ଆଭାସ କିଛୁ କିଛୁ ମିଳେ ।

କେତକୀ ତଥାପି ଅସ୍ୱୀକାର କରିପାରେ ନା ।

ସେ ସୁନ୍ଦରୀ ନୁହେଁ, ଯୁବତୀ ତରୁଣୀ କିମ୍ବା କିଶୋରୀ ନୁହେଁ । ଯେଉଁ-ମାନଙ୍କର ପ୍ରେମପତ୍ର ଉପରେ ଅଧିକାର ଅଛି ; ସେପରି ଅବସ୍ଥା ତାର ଗତ ହୋଇଛି ଅନେକ ଦିନରୁ । ତାକୁ ବର୍ତ୍ତମାନ ବୃଦ୍ଧା ବୋଲି କୁହାଯାଇପାରେ । ଯୌବନକୁ ସେ ଅତୀତର ବୁକୁରେ ଛାଡ଼ି ଆସିଛି ।

ଇଏତ' ଆଉ କମ୍ ଦିନର କଥା ନୁହେଁ । କେବେ ସେ ଗୋଟିଏ ଲାବଣ୍ୟମୟୀ ସୁନ୍ଦରୀ ତରୁଣୀ ଥିଲା ତାହା କି ଆଜି ଆଉ ତାର ମନେଅଛି ? କେବଳ ସ୍ମୃତି, ସ୍ମୃତି ଟିକିକ ଯାହା ଅଛି—ସିଏ କେବଳ ମୃତ ଅତୀତର ସୁମଧୁର ସଙ୍ଗୀତ ବେଳେବେଳେ ଶୁଣାଏ । ସଙ୍ଗୀତର ଭାଷା ସେ ଭୁଲିଯାଇଛି, ଗୁଞ୍ଜନ ଧ୍ୱନିଟା ମନେ ଅଛି ।

ନାସିକା ଉପରେ ଚଷମାଟିକୁ ଭଲଭାବେ ବସାଇ ପୁଣି ଥରେ ଚିଠିଟିକୁ ପଢ଼ିଲା କେତକୀ । ନା, ଅନ୍ୟ କାହାରିକୁ ନୁହେଁ—ତାକୁଇ ଲେଖା ହୋଇଛି । ଯେଉଁ ବ୍ୟକ୍ତି ଚିଠି ଖଣ୍ଡିକ ଲେଖିଛି, ଆଜିଯାଏ କେତକୀ ଯେ କାହିଁକି ତାକୁ ମନରୁ ଭୁଲିନାହିଁ ଏହା ଏକ ରହସ୍ୟ । ମଦନ, ପ୍ରଥମ ପ୍ରେମର କରୁଣ ବ୍ୟାକୁଳତା—ସେଇ ମଦନ ଶର୍ମାତପ ।

ଭଙ୍ଗା ସ୍ମୃତିକୁ ଯୋଡ଼ିବାକୁ ଲାଗିଲା କେତକୀ । ଗୋଟାଏ ଅସ୍ପଷ୍ଟ ଛବି ଦୃଷ୍ଟି ସମ୍ମୁଖରେ ଭାସି ଉଠିଲା । ଅସ୍ପଷ୍ଟ ହେଲେ ମଧ୍ୟ ତାର ବୁଝିବାରେ ଅସୁବିଧା ହେଲା ନାହିଁ । ତାର ଜୀବନର ପ୍ରଥମ ପ୍ରେମର ଚିତ୍ର । ତାର ଓ ମଦନର । ବାଲ୍ୟ ଓ କୈଶୋରର ଯୁଗ୍ମ ସନ୍ଧିକ୍ଷଣରେ ମନ ଦିଆ-ନିଆର ଦୃଶ୍ୟ, ସମସ୍ତଙ୍କୁ ଲୁଚାଇ ସେମାନଙ୍କର ଦୃଷ୍ଟିର ଆଡ଼ଆଳରେ ଥାଇ କେତେ ଅବାନ୍ତର କଥାର ଅବତାରଣା—ଯେଉଁ କଥାର କି କୌଣସି ଅର୍ଥ ନାହିଁ ; ସେସବୁ କଥାରେ ଉଭୟଙ୍କର ମୂଲ୍ୟବାନ ସମୟର ଅପଚୟ ଘଟିଛି ।

ଆଖିବୁଜି ସେସବୁ କଥା ଚିନ୍ତା କରିବାକୁ ଲାଗିଲା କେତକୀ । ଅତୀତର ଅଗାଧ ସମୁଦ୍ର ଭିତରେ ସନ୍ତରଣ କଲା ଏଥର । ସମୁଦ୍ର ଭିତରୁ ପାଇଲା ମଦନକୁ । ସେଦିନ ମଦନ ଚିଠିରେ ଲେଖିଛି, ସବୁ କି ତୁମେ ଭୁଲିଯାଇଛ କେତକୀ ? କିଛି କି ମନେନାହିଁ ? ଅତୀତର ମଦନକୁ ଯଦି ମନେଥାଏ ତେବେ ତୁମେ ସେପରି ସୋମବାର ସନ୍ଧ୍ୟାବେଳେ ଜୁବିଲି ପାର୍କର ଦ୍ୱାନ୍ତଭଙ୍ଗା ଲୁହା ବେଞ୍ଚ ପାଖରେ ଦେଖା କରିବ । ମଙ୍ଗଳବାର ଦିନ ମୁଁ ଏଠାରୁ ଚାଲିଯିବି, ଗୋଟାଏ ଜରୁରୀ କାମରେ ପଲାଶପୁର ଆସିଛି—ଯିବା ପୂର୍ବରୁ ତୁମ ସହିତ ଦେଖା କରିବାକୁ ଚାହେଁ । ମୁଁ ବର୍ତ୍ତମାନ ଅସୁସ୍ଥ, ହାର୍ଟ ଟ୍ରବୁଲ୍ ଦେଉଛି । ହୁଏତ' ଏଇ ମୋର ଶେଷ ପଦାର୍ପଣ ପଲାଶପୁରରେ, ହୁଏତ ଏହା ମୋର ଶେଷ ଦେଖା ହୋଇପାରେ ତୁମ ସହିତ !

ଆହୁରି ଲେଖିଛି—କେତକୀ ମହିଳା ହଷ୍ଟେଲ୍‌ରେ ଥାଏ, ତେଣୁ ସେଠାରେ ଦେଖା କରିବା ଅନୁଚିତ । ଅତଏବ ପାର୍କରେ ଦେଖା କରିବା ବ୍ୟବସ୍ଥା ସେ କରିଛି, କେତକୀ ଯେପରି ନିଶ୍ଚୟ ଆସେ ।

ମଦନ ଡାକ୍ତର । ଦିଲ୍ଲୀରେ ଥାଇ ପ୍ରାକ୍‌ଟିସ କରେ । ଉପାର୍ଜନ ଯଥେଷ୍ଟ କରେ ଏ ସମ୍ବାଦ କେତକୀର ଅଜ୍ଞାତ ନଥିଲା । ଉଭୟେ ଏକା ଗ୍ରାମର, ଏକା ସାଙ୍ଗରେ ସ୍କୁଲରେ ପଢ଼ୁଥିଲେ, ସେଇ ସମୟରୁ ଉଭୟଙ୍କ ମଧ୍ୟରେ ସ୍ନେହ, ପ୍ରେମ ଓ ସହାନୁଭୂତି ଜନ୍ମିଥିଲା । ସ୍କୁଲର ପଢ଼ାପଢ଼ି ଶେଷ ହେବାପରେ ମଦନ ବ୍ରହ୍ମପୁର କଲେଜରେ ଯାଇ ନାମ ଲେଖାଇଲା, ଆଉ କେତକୀ—ବାପାଙ୍କର ପଲାଶପୁର ବଦଳି ହେଲାରୁ ସେ ସେଠାକାର କଲେଜରେ ପଢ଼ିଲା । ଦୂରରେ ଥିଲେ ସୁଦ୍ଧା ଉଭୟଙ୍କର ଚିଠିର ଆଦାନ ପ୍ରଦାନ ଚାଲିଥାଏ । କିନ୍ତୁ ଶେଷ ପର୍ଯ୍ୟନ୍ତ ଯେ କାହିଁକି ସେମାନଙ୍କର ବିବାହ ହେଲା ନାହିଁ ସେଇମାନେହିଁ ଜାଣନ୍ତି ।

କେତକୀ ବି. ଏ. ପାଶ୍ କରି ଗୋଟିଏ ମହିଳା ସ୍କୁଲରେ ଶିକ୍ଷୟିତ୍ରୀ ହେଲା । ମଦନ କିଛିଦିନ ପରେ ଡାକ୍ତରୀ ପାଶ୍ କରି ଚାକିରି ନେଇ ଦିଲ୍ଲୀ ଚାଲିଗଲା । ଏହାପରେ ଚିଠିପତ୍ର କାରବାର ବନ୍ଦ ହୋଇଗଲା । କିନ୍ତୁ ଉଭୟଙ୍କ ନିକଟରେ ଏହା ଅସ୍ୱାଭାବିକ ବୋଲି ମନେ ହେଲା ନାହିଁ । ଦିନପରେ ଦିନ ଅତିବାହିତ ହେବାକୁ ଲାଗିଲା—ମାସ ବର୍ଷ ମଧ୍ୟ । କେତେ ରାଜ୍ୟର ଉତ୍‌ଥାନପତନ, ସମୁଦ୍ରରେ କେତେ ଜୁଆର ଭଟ୍ଟା ଦେଖାଦେଲା, କେତେ ନଦୀ କାଳର ଦୀର୍ଘ ନିଃଶ୍ୱାସରେ ଶୁଖିଗଲା ; କିନ୍ତୁ ସେମାନେ ଦୁହେଁ ଅଭ୍ୟସ୍ତ ହୋଇଗଲେ ଏକୁଟିଆ ଜୀବନ ଯାପନାରେ ।

ଆଜି ଚିଠି ଖଣ୍ଡିକ ପାଇବାପରେ କେତକୀର ଜୀବନଧାରା କେଜାଣି କାହିଁକି ଲଣ୍ଡଭଣ୍ଡ ହୋଇଗଲା । ମନରେ ଅସ୍ଥିରତା ଦେଖାଗଲା । ଆଜି ଶନିବାର, ମଝିରେ କାଲି ଦିନଟା, ପଅରଦିନ ମଦନ ସହିତ ଦେଖା ହେବ କେତେ ଯୁଗପରେ ।

ନିଶାଗ୍ରସ୍ତ ପରି ଦିନଟି କଟିଗଲା, ରାତିରେ ଶଯ୍ୟାରେ ପଡ଼ି କେତେ କଥା ଭାବିଲା କେତକୀ ।······ହଠାତ୍ କିଣ ପାଇଁ ମଦନ ଆସିଛି ? ସିଏ କି କେତକୀକୁ ଚିହ୍ନିପାରିବ ? କେତକୀ କି ଚିହ୍ନିପାରିବ ତାକୁ ?·

ତରୁଣ ମଦନର ମୁହଁଟା ବାରମ୍ବାର ମନେପକାଇବାକୁ ଚେଷ୍ଟାକଲା ସେ । ସ୍ପଷ୍ଟ କିଛି ମନେ ପଡ଼ିଲା ନାହିଁ । ସ୍ମୃତିର ବିଶ୍ୱାସଘାତକତା ଦେଖି ସେ ଚମକି ଉଠିଲା । ବୟସ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ସବୁଯାଏ, କିନ୍ତୁ ସ୍ମୃତି ଯାଏ କି ? ମଦନକୁ କି ସେ ଚିହ୍ନିପାରିବ ନାହିଁ ? ନିଶ୍ଚୟ ପାରିବ । ଯଦି ନପାରେ ?···ଉତ୍ତେଜନାରେ ଅଧୀର ହୋଇ ଉଠିଲା ସେ । ବିରକ୍ତିରେ ଲଲାଟ କୁଞ୍ଚିତ ହେଲା । ଖୁବ୍ ଶାନ୍ତିରେ ସେ ଥିଲା । ମଦନର ଚିଠିଖଣ୍ଡିକ ଝଡ଼ର ସଙ୍କେତ ନେଇ ତାକୁ ବିପର୍ଯ୍ୟସ୍ତ କରିବାକୁ ବସିଛି । ଜୀବନର ଅପରାହ୍ଣ ବେଳାରେ ପଛକୁ ଫେରିଚାହିଁ କି ଲାଭ ? ସୁଖତ' ମିଳିବ ନାହିଁ, ସ୍ମୃତି ରୋମନ୍ଥନ ଛଡ଼ା ଦିଆ-ନିଆରତ' କିଛି ନାହିଁ କାହାର… ।

ରବିବାରଟା ମଧ୍ୟ ଭାବନା ଚିନ୍ତା ଭିତରେ କଟିଗଲା । ସୋମବାରଦିନ ଆରମ୍ଭ ହେଲା ପ୍ରାତ୍ୟହିକ ଜୀବନଧାରା । ସ୍କୁଲ, ପାଠ ପଢ଼ାଇବା ଖାତା କରେକ୍ଟ କରିବା । ସ୍କୁଲ୍ ଛୁଟି ହେବାପରେ ଦୁର୍ବଳତା ଅନୁଭବ କଲା କେତକୀ । ହଷ୍ଟେଲକୁ ଆସି ହାତ ମୁହଁ ଧୋଇ ଲୁଗା ବଦଳାଇ ଖଣ୍ଡିଏ ସାଧାରଣ ଶାଢ଼ୀ ପିନ୍ଧିଲା । ପାନିଆ ଧରି ଦର୍ପଣପାଖରେ ଠିଆହେବା ମାତ୍ରେ ଅନ୍ୟମନସ୍କ ହୋଇପଡ଼ିଲା ସେ । ଦର୍ପଣରେ ଯେପରି ତାର ନଜର ଲାଗିଇ ପଡ଼ୁନାହିଁ । ପଡ଼ୁଛି ଏକ କୁତ୍ସିତ ବୃଦ୍ଧାର ମୁଖ, ସେ ବ୍ୟଙ୍ଗ କରୁଛି କେତକୀକୁ । ଗୋଟିଏ ଯୌବନ ଅତିକ୍ରାନ୍ତା ନାରୀର ପ୍ରତିମୂର୍ତ୍ତି ବ୍ୟାକୁଳ ନୟନରେ ଚାହିଁଛି ତା'ଆଡ଼େ । ଶ୍ୱେତ-କୃଷ୍ଣ ମିଶ୍ରିତ ସ୍ୱଳ୍ପ କେଶରେ ଲଲାଟ ଢଙ୍କା ପଡ଼ି ନାହିଁ । ତନ୍ୱୀ ଶ୍ୟାମା ଶିଖରୀ-ଦଶନା କେତକୀର ମୃତ୍ୟୁ ହୋଇଛି ଅନେକ ଦିନରୁ । ଆଜି ଆଉ ତାର କିଛି ଅବଶିଷ୍ଟ ନାହିଁ, ଯାହା ଅଛି ତାହା ଧ୍ୱଂସାବଶେଷ ମାତ୍ର । ମଦନ ତାକୁ ଚିହ୍ନିପାରିବା ଭଳି କିଛି ନାହିଁ ।

କେବେ, କେତେ ଯୁଗତଳେ ସେ ନାରୀ ଥିଲା ? ଭୁତ-ଅତୀତ ହୃତ ଯୌବନକୁ ମୁଣ୍ଡ କୋଡ଼ି ଚିତ୍କାର କରି ଡାକଲେ ସୁଦ୍ଧା ତାହା ଆଉ ଫେରିଆସିବ ନାହିଁ । ମଦନ ଯଦି ଡାକିଲା, ତେବେ କାହିଁକି—କାହିଁକି ତାକୁ ଆଗରୁ ଡାକିଲା ନାହିଁ ?—କେତକୀ କାନ୍ଦି ପକାଇଲା । ତାର ଏହି ଚେହେରା ଦେଖି ମଦନ ତାକୁ ଚିହ୍ନିପାରିବ ନାହିଁ, ସେ ମଧ୍ୟ ମଦନକୁ ଧରା ଦେବ ନାହିଁ । କେବଳ ଶେଷ ଦେଖାଟିଏ ଦେଇ ଚାଲିଆସିବ । ଯେଉଁ ତରୁଣୀ ସୁନ୍ଦରୀ ମୂର୍ତ୍ତିକୁ ମଦନ ଆଜିଯାଏ ହୃଦୟରେ ସ୍ଥାନ ଦେଇଅଛି ସେଇ କେତକୀର ସ୍ମୃତି ତାର ଶେଷ ଜୀବନ ପର୍ଯ୍ୟନ୍ତ ମନରେ ରହୁ—ଏ କେତକୀକୁ ନୁହେଁ ।

ସନ୍ଧ୍ୟାପରେ ପାର୍କକୁ ଆସିଲା କେତକୀ । ହାତଭଙ୍ଗା ଚେୟାରଟିରେ ଆସି ବସିଲା । ନିଅନ୍‌ର ମ୍ଳାନ ବିପର୍ଣ୍ଣ ଆଲୋକରେ ସମଗ୍ର ସ୍ଥାନଟି ମାୟାଚ୍ଛନ୍ନ ହୋଇଥାଏ ।

ସାନ୍ଧ୍ୟଭ୍ରମଣ ଶେଷକରି ଜଣ ଜଣ ହୋଇ ଚାଲିଯାଉଥାନ୍ତି, କ୍ରମେ ନିର୍ଜ୍ଜନ ହୋଇ ଆସୁଥାଏ ସ୍ଥାନଟି । ନିଜର ଭାବନା ନେଇ ମଗ୍ନଥାଏ କେତକୀ, ହଠାତ୍ ଦେଖି ପାରିଲା ସେହି ବେଞ୍ଚର ଗୋଟିଏ ପାଖରେ ଜଣେ ବୃଦ୍ଧ ଭଦ୍ରଲୋକ ବସିଛନ୍ତି ।

ଭୁଲ୍ ନୁହେଁ, ଦ୍ୱିଧା ନୁହେଁ—ଏଇତ' ମଦନ । କିନ୍ତୁ ଏ' କି ପରିବର୍ତ୍ତନ ତାର ! ମହାକାଳ ତାହାହେଲେ ମଦନକୁ ମଧ୍ୟ ଛାଡ଼ି ନାହିଁ ! ମହାକାଳ, ତାରି ସବୁ ଖୁସିକୁ ନମସ୍କାର ।

ଭଦ୍ରଲୋକଟି ଟିକିଏ ଇତଃସ୍ତତଃ ହୋଇ କହିଲେ—କିଛି ମନେ କରିବେ ନାହିଁ, ଆପଣ କି କେତକୀ ଦେବୀ ?

କେତକୀ ଚମକି ପଡ଼ିଲା । ନା—ମଦନ ତାହାହେଲେ ତାକୁ ଚିହ୍ନିପାରି ନାହିଁ । ଦ୍ୱିଧାହୀନ କଣ୍ଠରେ ସେ ଉତ୍ତର ଦେଲା—ନା, ମୁଁ କେତକୀ ନୁହେଁ । ତ ର ବନ୍ଧୁ ରେଖା । ସେ ଅସୁସ୍ଥ ଥିବାରୁ ମଦନବାବୁଙ୍କ ସହିତ ଦେଖା ନ କରି ଖବରଟା ମୋତେ ଦେବାକୁ କହିଛି । ଆପଣ ନିଶ୍ଚୟ ମଦନବାବୁ ?

ସ୍ଥିର ଦୃଷ୍ଟିରେ ଭଦ୍ରଲୋକଟି ତା' ଆଡ଼େ ଚାହିଁ କହିଲେ—ନା, ମୁଁ ମଦନବାବୁ ନୁହେଁ । ମଦନବାବୁ ହଠାତ୍ ଟେଲିଗ୍ରାମ୍ ପାଇ ଦିଲ୍ଲୀ ଫେରିଯାଇଛନ୍ତି, ତେଣୁ ସେ ଆସିପାରିଲେ ନାହିଁ । ଏହି କଥା କେତକୀ ଦେବୀଙ୍କୁ ଜଣାଇ ଦେବାପାଇଁ ମୋତେ କହିଯାଇଥିଲେ । ଦିଲ୍ଲୀରେ ଯେତେବେଳେ ଥିଲି କିଛିଦିନ ଯାଏ ମୁଁ ତାଙ୍କର ଚିକିତ୍ସାଧୀନରେ ଥିଲି, ସେହି ସମୟରୁ ଆମର ବନ୍ଧୁତା ହୋଇଥିଲା । ଦେଖାକରି ନପାରିବା ହେତୁ ସେ ଅତିଶୟ ଦୁଃଖ ପ୍ରକାଶ କରିଛନ୍ତି । କେତକୀ ଦେବୀ ମଧ୍ୟ ଆସି ନାହାନ୍ତି ବୋଲି ଶୁଣିଲି । ମଦନବାବୁ ତାଙ୍କୁ ଭୁଲି ନାହାନ୍ତି ଏଇ କଥାଟି ଆପଣ ଦୟାକରି ତାଙ୍କୁ କହିଦେବେ ।

କେତକୀର ବୁକୁ ଭିତରୁ ଗୋଟାଏ ଦୀର୍ଘ ନିଃଶ୍ୱାସ ବାହାରି ଆସିଲା । ମଦନ ତାକୁ ଭୁଲି ନାହିଁ ନା, ଚିହ୍ନି ପାରିନାହିଁ ? କେଉଁଟା ସତ ? ଛାଡ଼, ସେ ଯାହା ଚାହିଁଥିଲା ତାହାହିଁ ଘଟିଛି । ବର୍ତ୍ତମାନର କେତକୀକୁ ସେ ଚହ୍ନନ୍ତା କପରି ? ତାର ଭୁଲ୍ ଭାଙ୍ଗି ଆଉ ଲାଭ କଣ ? ଜୀବନର ପରମାୟୁ ଶେଷ ହୋଇ ଆସୁଛି, ଆଉ କେଉଁଟା ଦିନପାଇଁ ଏ ଜଞ୍ଜାଳ !

ମଦନ ଆଡ଼େ ଚାହିଁ ନମସ୍କାର କରି ଯିବାଲାଗି ଉଠି ଠିଆ ହେଲା କେତକୀ । କହିଲା—ଆପଣ ମଧ୍ୟ ମଦନବାବୁଙ୍କୁ କହିବେ କେତକୀ ତାଙ୍କୁ ଭୁଲି ନାହିଁ

କେତକୀ ଚାଲି ଆସିଲା । ତାର ବିଳୟମାନ ମୂର୍ତ୍ତିଆଡ଼େ ସ୍ତବ୍ଧ ହୋଇ ଚାହିଁ ରହିଲା ମଦନ । ନା, କେତକୀ ତାକୁ ଚିହ୍ନିପାରି ନାହିଁ—କିନ୍ତୁ ସିଏତ' ତାକୁ ଚିହ୍ନି ପାରିଛି । ଅନେକ କଥା କହିବାକୁ ଥିଲା, ହେଲା ନାହିଁ—କୌଣସି ଦିନ ମଧ୍ୟ ହୋଇପାରିବ ନାହିଁ । କେତକୀ କୌଣସି ଦିନ ଜାଣିପାରିବ ନାହିଁ ଆଜି ସିଏ

ଆସିଥିଲା ସେ ମଦନର ବନ୍ଧୁ ନୁହେଁ । କାହିଁକି, କାହିଁକି ସେ ମୁହଁ ଖୋଲି କହିପାରିଲା ନାହିଁ—କେତକୀ, ମୁଁ ମଦନ……

ତେବେ କି କେତକୀ ତାକୁ ଚିହ୍ନି ପାରିଥିଲା ? କାହିଁକି ସେ ଅସ୍ୱୀକାର କଲା ନିଜକୁ ଗୋପନ ରଖିଲା କାହିଁକି ?—

ଷ୍ଟାମାସ୍ଥ ଆନାର ପିଟା ଘଣ୍ଟାରେ ଆଠଟା ବାଜିଲା । ଉଠିଲା ମଦନ, ଦିଲ୍ଲୀ ମେଲ ଧରିବାକୁ ହେବ । ଆଉ ଏ ଘରେ ରହିବା ତାର କି ପ୍ରୟୋଜନ ? ଜୀବନର ସମସ୍ତ କାମନା ବାସନା ତାର ନିଜ ଦୋଷରୁ ପଣ୍ଡ ହୋଇଗଲା । ସୁନ୍ଦର ଅଭିନୟ କରିଛନ୍ତି ଦୁହେଁ । ଜଣେ କେତକୀର ଦୂତୀ ବୋଲି ପରିଚୟ ଦେଲା, ଅନ୍ୟଜଣକ ପରିଚୟ ଦେଲା ମଦନର ଦୂତ ।

ଭାଗ୍ୟର କି ନିଷ୍ଠୁର ପରିହାସ ।



# ଅନେକ କୋଠରୀ

ମୁଁ ବନ୍ଦେନର ଘରକୁ ଯିବା ସମୟରେ ଯେଉଁ ଦୁର୍ବଳତାର ଫଳକ ମୋତେ ବନ୍ଦ କରେ ସିଏ ହେଉଛି ତା'ର ସଦ୍ୟ ବିବାହିତା ରୂପସୀ ସ୍ତ୍ରୀର ଲାବଣ୍ୟ ...... । ... ଯାହା ଦେହରେ ଅନେକ ଦେହକୁ ଆମୋଦ ଦେଲାଭଳି ପ୍ରଚୁର ଶକ୍ତି ଅଛି ।

● ଶ୍ରୀ ପ୍ରମୋଦ ପଣ୍ଡା

ବିସ୍ତ ରେସ୍ତୋରାଁ ... ଅଥଚ ମୁଁ ସେ ରେସ୍ତୋରାଁର ଜନଗହଳି ମଧ୍ୟରେ ମୋ ନିର୍ଜନ ଶରୀର ସ୍ପନ୍ଦନ ଅନୁଭବ କରୁଥିଲି । ମୋ ହାତ, ଗୋଡ଼ ଓ ଦେହର ଅଞ୍ଚଳମାନେ ମୋଭଳି ଏକ ଚେତନ ବିନ୍ଦୁର କେନ୍ଦ୍ରୀଭୂତ ହୋଇପଡ଼ିଥିଲେ । ତେଣୁ ସେମାନେ ମୋ ପରି ଓ ମୁଁ ତାଙ୍କ ପରି ନିର୍ଜ୍ଜନ ଥିଲି । ବସ୍ତୁତଃ ମୁଁ ଜଣକର ପ୍ରତୀକ୍ଷାରେ ହିଁ ଥିଲି । ନାନାଧି ବିରକ୍ତି ମଧ୍ୟରେ ସେ ପ୍ରତୀକ୍ଷା ସାମୟିକ ଉତ୍ତେଜନାର ଉତ୍ତାପକୁ ମୋ ଭିତରେ ସଂଗୃହିତ କରୁଥିଲା ଏକ ଅପୂର୍ବ ମାଂସର ଗନ୍ଧ ନେଇ ।

ଗୋଟାଏ ପରେ ଗୋଟାଏ ସିଗାରେଟ୍ ଓ ଦୁଇଟି କଫି ନିଃଶେଷ କରି-ସାରିବା ପରେ, ମୋ ସାମନାର ଅକ୍ଷରଗୁଡ଼ିକ ଖୁବ୍ ଜାଲଜାଲୁଆ ଦେଖାଯାଉଥିଲେ । ମୋର ସାରା ଦେହ ମଧ୍ୟରେ ମୁଁ କ୍ଳାନ୍ତ ଅନୁଭବ କରୁଥିଲି...ତେଣୁ ଏ ସମୟରେ ନନ୍ଦିତା ଆସିବାର ଯଥାର୍ଥ ମୁଁ ହୃଦୟଙ୍ଗମ କରିପାରୁନଥିଲି । ନନ୍ଦିତା ସେନ୍‌ଗୁପ୍ତ... ମୋ ପ୍ରେମର ପ୍ରତୀକ ସିଏ । ତା ଆଲୁଲାୟିତ କେଶର ଅରଣ୍ୟରେ ସୁବାସିତ କୋଳାହଳକୁ ମୋ ପର୍ଯ୍ୟନ୍ତ ଟାଣି ଆଣେ । କିନ୍ତୁ ତା ଦେହର ନଗ୍ନ ଚହଟିଡ଼ିର ସୁଗନ୍ଧକୁ ଅନୁଭବ କରିବାପାଇଁ ମୋ ଭିତରେ କୌଣସି ରୋମାଞ୍ଚକର ଶିହରଣ ସୃଷ୍ଟି ହେଉ ନଥିଲା । ତଥାପି ମୁଁ ଭାବୁଥିଲି, ତା ଉପସ୍ଥିତି ମଧ୍ୟରେ ମୋ କ୍ଳାନ୍ତିର କାନ୍ଦଣା ସବୁ ଲୋପ ପାଇଯିବ ।

ମୁଁ ଭାବୁଛି, କ୍ଳାନ୍ତ କ'ଣ ମୋ କ୍ଳାନ୍ତିର ଲେତକ...ଆଉ ଦେହର କବ୍‌ଜା ଓ ଗଣ୍ଠିରେ ରହିଥିବା ଗଣି ଗଣି ଦୁର୍ବଳତା କଣ ମୋ କ୍ଳାନ୍ତିର କାନ୍ଦଣା । ତେବେ ଯୌବନର ଅଫୁରନ୍ତ ଶକ୍ତି ଓ ଶୁଭ୍ରତା ମଧ୍ୟରେ ମୋ ସହ ନନ୍ଦିତାର ସଂପର୍କର ସଂଜ୍ଞା କଣ ?

ମୁଁ ଶୁଣିଛି ଦିନେ ନନ୍ଦିତା କହୁଥିଲା ।

କେତେଜଣ ପୁରୁଷଙ୍କ ନିକଟରେ ଦେହ ସ୍ପର୍ଶ ଆନନ୍ଦ ବିବାହ ପରେ ଜାତ ହୁଏ କିନ୍ତୁ ଅନ୍ୟ କେତେଜଣଙ୍କ ନିକଟରେ ଏ ଅନୁଭୂତି ଆରମ୍ଭରୁହିଁ ହୁଏ... ତେଣୁ ବିବାହର ପ୍ରୟୋଜନ ସେମାନଙ୍କଠାରେ ସ୍ତ୍ରୀ ଖୋଜିପାଏନା ବରଂ ବିବାହ ପୂର୍ବରୁ ସେମାନଙ୍କ ନିକଟରୁ ପ୍ରଚୁର ଆନନ୍ଦ ମିଳେ ।"

ମୁଁ ଆଶ୍ଚର୍ଯ୍ୟରେ କହିଥିଲି ।

"ନନ୍ଦିତା ତୁମେ ମୋ ପାଖରେ ରହି ବହୁତ କଥା ଶିଖିଗଲ ।"

"ହଁ ଆଉ ତୁମେ ମୁହୂର୍ତ୍ତର ସଂକ୍ଷେପ ଭିତରେ ରହି ଅନେକ କଥା ଭୁଲିଗଲ ।"

"ନାଁ...ତୁମେ ଭୁଲ ବୁଝିଛ । ମୁଁ ଅନ୍ଧାରକୁ ଭଲ ପାଏ, ଆଲୋକକୁ ସମ୍ମାନ କରେ ।"

"ହୋଇପାରେ କିନ୍ତୁ ମୁଁ ଜାଣେ ତୁମ ଦୁର୍ବଳତାରେ ତୁମେ ଥରୁଛ ।"

ନନ୍ଦିନୀ ମୋ ପ୍ରତି ସେଦିନ ତାଚ୍ଛଲ୍ୟ ହାଣିଥିଲା ଆଉ ମୁଁ ତା ଶୁଭ୍ରମସୃଣ ଭଳି ମାଂସଳ ଦେହର ନଗ୍ନତାରେ ଚୁମ୍ବନ ଆଙ୍କିଥିଲି । ବୋଧହୁଏ ଦୁର୍ବଳତା ମୋର ନିତାନ୍ତ ନିଜସ୍ୱକୁ ହତ୍ୟା କରିଥିଲା...ତା'ପରେ ଅନେକଦିନ ନନ୍ଦିତା ସହ ମୁଁ ଗମ୍ଭୀର କଥାବାର୍ତ୍ତା କରିଥିଲି...ତାକୁ ପରୀକ୍ଷା କରିବା ପାଇଁ । ମୁଁ ସବୁ ପରୀକ୍ଷାରେ ଲକ୍ଷ୍ୟ କରିଛି ନନ୍ଦିତାର ଖୋଲା ହସର ରାଗିଣୀ... । କିନ୍ତୁ ମୋ ନିଜର ପ୍ରକୃତ ପରିଚୟ ନନ୍ଦିତା ପାଖେ ଗୋପନରଖି ମୁଁ ଭାବୁଥିଲି ମୁଁ ତା ପାଖେ କିମ୍ବା ସେ ମୋ ପାଖେ କେହି କାହାପାଖେ ନ୍ୟାୟ ଆଣି ପାରୁନୁ । ମୋ ଦେହରେ କ୍ଲାନ୍ତ ଏପରିକିର କରୁଣ କାହାଣୀ ଆଣିବା ବେଳେ ମୁଁ ଭାବୁଛି ହେ ପ୍ରଭୁ ନନ୍ଦିତା ପାଇଁ ମୋର ଉପସ୍ଥିତିରେ ତୁମେ ଶାନ୍ତି ଆଣୁଛ । ପ୍ରଭୁଙ୍କ କଥା ମୋ ମନକୁ ଆସିବା ସମୟରେ ମୁଁ ମୋ ବାପାଙ୍କ ପ୍ରଭୁତ୍ୱକୁ ମନେ ପକାଇଲି । ମୁଁ ବାପାଙ୍କର ପ୍ରଭୁତ୍ୱକୁ ବିରୋଧ କରିପାରିନି ଯେହେତୁ ମୁଁ ଜାଣେ ସେ ମୋର ବାପା । ଅଥଚ ସେ ତାଙ୍କ ପ୍ରଭୁତ୍ୱର କଟକଣା ତଳେ ମୋ ସନ୍ତପ୍ତ ମନର ଇଚ୍ଛାବୃତ୍ତିକୁ ଅନେକଥର ତାଙ୍କ ଗୀତାର ଅର୍ଗଳି ଭିତରେ ରହି ହତ୍ୟା କରିଛନ୍ତି । ତଥାପି ମୋ ବାପା ମୋ ପାଇଁ ଅନେକ ଯତ୍ନ ନେଇଛନ୍ତି । ବୋଧହୁଏ ସେହି ଯତ୍ନର ଅତିଶଯ୍ୟ ପ୍ରଭୁତ୍ୱରେ ମୁଁ ଆଜି ମୋ ଛଟପଟ ସଂଧାନୀ ମନର କୋମଳ ଶିଶୁକୁ ହତ୍ୟା ଦେବାରେ କୁଣ୍ଠାବୋଧ କରୁନାହିଁ ।

× × × × ×

ମୁଁ ଅତିଶଯ୍ୟ ବିରକ୍ତିରେ ରେଷ୍ଟୋରା ବାହାରକୁ ଚାଲିଆସିଲି । ନନ୍ଦିତା ଭଳି ଉଲ୍ଲୁପୀମାନଙ୍କର ଅସହ୍ୟ ସୌନ୍ଦର୍ଯ୍ୟ ପ୍ରତି ମୋର ଘୃଣା ଆସୁଥିଲା । ମୋ ସକଳ ପୁରୁଷାକାରର ଗୋପନୀୟ ଅଥବା ମଧ୍ୟରେ ମୁଁ ନିଜପ୍ରତି ଅସମ୍ମାନ ପ୍ରଦର୍ଶନ

କରୁଥିଲି ସେମାନଙ୍କ ସମ୍ମୁଖରେ । ସ୍ୱପ୍ନାର ଏକ ସ୍ଥାନରେ ମୋତେ ଅନ୍ୟ ଏକ ଦୁର୍ବଳତା ଗ୍ରାସ କଲା । ବିଜେନ୍ ବନ୍ଦୋପାଧ୍ୟାୟର ଘର ସାମନା ଛକ । ମୁଁ ବିଜେନ୍‌ର ଘରକୁ ଯିବା ସମୟରେ ଯେଉଁ ଦୁର୍ବଳତାର ଝଲକ ମୋତେ ବିଦ୍ଧ କରେ ସିଏ ହେଉଛି ତା'ର ସଦ୍ୟ ବିବାହିତ ରୂପସୀ ସ୍ତ୍ରୀର ଲାବଣ୍ୟ··· । ମୁଁ ଭାବୁଛି ତା ସ୍ତ୍ରୀ ଏକ ନାଗକନ୍ୟା ହୋଇପାରେ···ଯା ଦେହରେ ଅନେକ ଦେହକୁ ଆମୋଦ ଦେବାଭଳି ପ୍ରଚୁର ଶକ୍ତି ଅଛି ।

ନନ୍ଦିତା ମନେ ପଡ଼େ ତା' ସ୍ତ୍ରୀକୁ ଦେଖିବା ସମୟରେ । ମୁଁ ଭାବିଲି ନନ୍ଦିତା ବୋଧେ ବିଜେନ୍ ବନ୍ଦୋପାଧ୍ୟାୟର ସ୍ତ୍ରୀ ସ୍ୱପ୍ନା ହୋଇ ମୋ ପ୍ରତି କଟାକ୍ଷ ହାଣୁଛି ।

ମୁଁ ଏବେ ଘୃଣା କରୁଛି ନନ୍ଦିତାକୁ···ସ୍ୱପ୍ନାକୁ··· । ବୋଧହୁଏ ବିଜେନ ପାଇଁ ତା ସ୍ତ୍ରୀର ଅପରୂପ ଲାବଣ୍ୟ ଏକ ଭୟଙ୍କର ରୀତିର ଭୂତହୋଇ ଆସିବ । ଫଳରେ ତା ପ୍ରାଚୁର୍ଯ୍ୟର ସମସ୍ତ ଅହଙ୍କାର ଲୋପ ପାଇଯିବ ଆଖି ପିଛୁଳାକେ । ହଠାତ୍ ମୋ ସାମନାରେ ଏକ ସଂଭ୍ରାନ୍ତପୁରୁଷର ଶବ ଶୋଭାଯାତ୍ରା ଆରମ୍ଭ ହେଲା । ମୁଁ ଲକ୍ଷ୍ୟକଲି ପୁରୁଷଟି ବିଜେନ୍ ବନ୍ଦୋପାଧ୍ୟାୟ ବ୍ୟତୀତ ଆଉ କେହି ନୁହଁ । ତା ସ୍ତ୍ରୀ ଦୁଃଖ କରିବା ପରିବର୍ତ୍ତେ ଏକ ଉଲଗ୍ନ ନାଗୀଚରିତ୍ରରେ କେବଳ ହସୁଛି ମାତ୍ର । ମୁଁ ଯାତ୍ରା ଆରମ୍ଭକଲି ଏକ ଶବଯାତ୍ରାର କୋଳାହଳରେ··· ।

ମୁଁ ନନ୍ଦିନ···ସ୍ୱପ୍ନା···ବିଜେନ୍‌କୁ ଘୃଣାକରେ···କିନ୍ତୁ ମୁଁ ଯୁକ୍ତିକଲି ନିଜ ମଧ୍ୟରେ ଯେ ମୁଁ ଅତିଶୟ ଘୃଣାର ସୀମାରେ ନିଜକୁ ରଖି ସେମାନଙ୍କ ପ୍ରତି ସଂବେଦନଶୀଳ ହେଉନାହିଁ କି ? ମୋ ଭିତରେ ଦୁଇଟି ପରସ୍ପର ବିପରୀତ ପୁରୁଷର ଯୁକ୍ତି ଦେଖି ମୁଁ ନିଜେ ହସିଲି । ତା ପରେ ସିଗାରେଟ୍ ଜଳାଇ ଜଳାଇ···ମୁଁ ସ୍ମୃତିକୁ ନାନାଦି ଲୋକଙ୍କ ଗହଳରେ ପେଣ୍ଡୁଭଳି ଫୋପାଡ଼ି ଦେଲି । ପାଖରେ ଯାଉଥିବା ଝିଅମାନେ ମୋତେ ନନ୍ଦିତା ଭଳି ଜଣାଗଲେ··· । ତାଙ୍କ ପ୍ରତି ଆସକ୍ତି ହେତୁ ମୋର ଶତ୍ରୁତା ବଢ଼ିଲା । କେତୋଟି ଯୌବନ ପ୍ରାଚୁର୍ଯ୍ୟ ଓ ସୌନ୍ଦର୍ଯ୍ୟର ମୂର୍ତ୍ତିମନ୍ତ ପ୍ରତିମୂର୍ତ୍ତିକୁ ଓଟଭଳି ମୋ ସାମନାରେ ଦ୍ରୁତ ଗତିରେ ଚାଲିଯାଉଥିବା ସମୟରେ ।

ମୁଁ ସେମାନଙ୍କ ଠାରୁ ମୁହଁ ଫେରାଇ ପ୍ରଭୁଙ୍କୁ ପ୍ରାର୍ଥନା କଲି " ହେ ଈଶ୍ୱର ତୁମେ ଯଦି ପ୍ରକୃତ ଅମାପ ଶକ୍ତିର ପ୍ରତୀକ ହୋଇଥାଅ···ତେବେ ମୋ ପାଇଁ ଏକ ନିଜସ୍ୱ ଚନ୍ଦ୍ରାର ଇଲାକା ମୁଁ ଚାହୁଁଛି ···ଯେଉଁଠାରେ ମୁଁ ମୋ ପାଇଁ ଏକ ପ୍ରୟୋଜନୀୟ ଦେହର ସନ୍ଧାନ ପାଇ ପାରିବ । ସିଏ ମୋ ଗ୍ରନ୍ଥିର ଚମତ୍କାରକୁ ବୁଝି ପାରିବ ଓ ମୋତେ ଏ ଉଲଗ୍ନ ଉଲପୀମାନଙ୍କର ଶତ୍ରୁତାରୁ ରକ୍ଷା କରିପାରିବ । କିନ୍ତୁ ତୁମେ ଯଦି ଛଳନାକାରୀମାନଙ୍କୁ ପୋଷିବା ପାଇଁ ଅନ୍ୟ ଏକ ଛଳନାକାରୀ ହୋଇଥାଅ ତେବେ ମୁଁ ସତକହୁଛି, ମୁଁ ତୁମକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହଁ ; ବରଂ ତୁମେ

ମୋ ଶିକାରର ଲକ୍ଷ୍ୟ ସ୍ଥଳ ହେବ । ତାପରେ ମୁଁ କୋଳାହଳକୁ ଚୁମ୍ବନ ଦେଇ ଏକ ଖୋଲା ପଡ଼ିଆ ଭିତରକୁ ଚାଲି ଆସିଲି । ଶୁଣିଛି ଖୋଲା ପଡ଼ିଆର ଆତ୍ମାରେ ଈଶ୍ୱର ଲୁଚି ରହିଥାନ୍ତି । କିନ୍ତୁ ମୁଁ ଜାଣେ ଏ ଏକ ମନଗଢ଼ା କଥା : ଯାହାକୁ ଦିନେ ମୋ ବୋଉ ପିଲାବେଳେ କହୁଥିଲା । ମୁଁ ତାପରେ ପଡ଼ିଆକୁ ଆସି ଈଶ୍ୱରଙ୍କୁ ଘୃଣା-କରି ଶିଖିଲି । ତାପରେ ମୁଁ ମେଘକୁ ଘୃଣା କରିବାକୁ ଆରମ୍ଭ କଲି । ମେଘଗୁଡ଼ାକ ଅରଣ୍ୟ ସୃଜନାକୁ ବନ୍ଦୀ କରି ରଖନ୍ତି···ଆଉ ସେମାନଙ୍କ ସବୁଜ ଦେହର ଆତ୍ମା-ଗର୍ବରେ ପୃଥିବୀ ବାସିନ୍ଦାମାନଙ୍କୁ ଖତେଇ ହେବାଭଳି ଭଂଗୀରେ ଅନାଇ ରହିଥାନ୍ତି । ...ଆଉ ପକ୍ଷୀମାନେ ସେ ମେଘର ଶୁଭ୍ର ତଳେ ଗୋଟିଏ ଗୋଟିଏ ବନ୍ଧୁପର ପ୍ରତୀକ··· ଯେତେବେଳେ ସେମାନେ କୌଣସି କଥାନମାନ ଟେଲିଗ୍ରାମ ଖଣ୍ଡରେ ନିଜ ନିଜ ମୁକ୍ତ ଜୀବନର ସଙ୍ଗୀତରେ ବ୍ୟସ୍ତଥାନ୍ତି... । ଇଚ୍ଛା ହୁଏ ମୁଁ ଏକ ପକ୍ଷୀର ଶିକାର କରି ତା ରକ୍ତର ଚଡ଼ାକୁ ମଥାରେ ଲଗାଇ ଏ ମନର ଘୃଣାକୁ ଶାଂତି ଦେଇ ପାରନ୍ତି । ସାମଗ୍ରିକ ଗର୍ବ ମଧ୍ୟରେ... ମୋ ବାପାଙ୍କ ପ୍ରତି ଘୃଣା... ନନ୍ଦିତା ପ୍ରତି ଘୃଣା... ସ୍ୱଜନ ପ୍ରତି ଘୃଣା·· ସମାଜ ପ୍ରତି ଘୃଣା...ସ୍ୱପ୍ନ ପ୍ରତି ଘୃଣା···ମେଘ ପ୍ରତି ଘୃଣା... ଘୃଣା, ଘୃଣା ସବୁ ଘୃଣାତକ ଏକ ରକ୍ତଚଡ଼ାର ସୀମିତ ଗୋଲକାର ମଧ୍ୟରେ ଲେପ ପାଇ ଜ୍ୱଳନ୍ତ ଅଗ୍ନି ଭଳି ଦୀପ୍ତି ଓ ଦ୍ୟୁତିର ଝଲକ ଆଣିଥାନ୍ତା । କିନ୍ତୁ ମୋ ବାପାଙ୍କ ଚରିତ୍ର କିଛି ପରିମାଣରେ ମୋ ନିକଟରେ ରହି ଯାଇଥିବାରୁ ମୁଁ ଘୃଣାପରିବର୍ତ୍ତେ ପକ୍ଷୀମାନଙ୍କ ପ୍ରତି ଆଶକ୍ତ ଆଣିଲି···ବୋଧହୁଏ ଧର୍ମ ସବୁ କିଣି ନେବାର ନିର୍ଲ୍ଲଜ ପ୍ରଚେଷ୍ଟା ମୋ ଭିତରେ ଜନ୍ମ ନେଇଥିଲା ।

× × × ×

ପଡ଼ିଆରୁ ଆସି ଅନେକ ଗଳିରେ ଇତଃସ୍ତତଃ ବୁଲିବା ପରେ ମୁଁ ଘର ନିକଟସ୍ଥ ଗଳିରେ ପାଦ ଦେଲି । ନିର୍ଜନତା ଓ ରାତିର ସାନ୍ଦ୍ରତା ସଂପର୍କରେ ମୁଁ ଅଧିକ ସଚେ-ତନ ହେଲି ଯେହେତୁ ଘର ପାଖେଇ ଆସୁଥିଲି...ବାପାଙ୍କୁ କୈଫିୟତ୍ ଦେବାକୁ ପଡ଼ିବ । କଫିନ୍ ଭଳି ସ୍ଥିର ଆମ ଘର ସଂଲଗ୍ନ ଗଳିର ଚେହେରା ମଧ୍ୟରେ ମୃତ ମହୋତ୍ସୋବାସ୍ତେ ସ୍ମୃତି ମୋ ନିକଟକୁ ଆସୁଥିଲା । ଆଉ ନନ୍ଦିତା... ଯିଏ ମୋ ପ୍ରତି ଏକ ଅବଜ୍ଞାକାର ସ୍ୱରରୁ ଜାତ କନ୍ୟା... ଯାହାକୁ ମୁଁ ଘୃଣା କରୁଥିଲି ।

କଫିନ୍ ସଣ୍ଟ ଭଳି ରାତିର ଚେହେରାକୁ ଆଡ଼େଇ ମୁଁ ଘର ବାରଣ୍ଡା ନିକଟକୁ ଆସିବା ସମୟରେ ଦେଖିଲି ବାପା ନାହାନ୍ତି ବାରଣ୍ଡାରେ ··· । ତାଙ୍କ ନିତ୍ୟ ବ୍ୟବହୃତ ଆରାମଚୌକିଟା ବାପାଙ୍କ ପ୍ରତିଭୂର ପ୍ରତୀକ ହୋଇ ମୋତେ ପ୍ରଶ୍ନ ପଚାରୁଛି ' ଆରେ ନୀତିଦାସ ! ଏତେବେଳେ ଯାଏଁ କେଉଁଠି ଥିଲୁ ?'' ମୁଁ ଡରି ଡରି ଉତ୍ତର ଦେବା ସମୟରେ, ବହେ ହସିଲି ବାପାଙ୍କ ଅନୁପସ୍ଥିତିକୁ ହୃଦୟଙ୍ଗମ କରି । ବାପା ବସୁଥିବା ଚୌକିକୁ ବାପା ବୋଲି ମନେକରି ମୁଁ ଗୁଣୁଗୁଣୁ ସ୍ୱରରେ

ଉଚ୍ଚାରଣ କଲି । "ବାପା···ମନେରଖ ତୁମେ ମୁଁ ଦୁହେଁ ପରସ୍ପରକୁ ବିପରୀତ ଦିଗରେ ଅତିକ୍ରମ କରୁଥିବା ଦୁଇଟି ଭିନ୍ନ ଦ୍ରୁତଗାମୀ ଟ୍ରେନ । ଅଥଚ ଆମେ ଦୁହେଁ ନିର୍ଦ୍ଦିଷ୍ଟ ବନ୍ଦରେ ମିଶିବା କଥା ମିଶିବା ପାଇଁ ନିର୍ଧାର୍ଯ୍ୟ ଦିନ ଆମ ଦୁଇଜଣଙ୍କ ପାଇଁ ପୃଥକ । ଦୁଇଟି ଭିନ୍ନ ଦ୍ରୁତଗାମୀ ଟ୍ରେନ୍‌ର ଦୁଇଟି ଡବାରେ ରହି ଆମେ ପରସ୍ପରର ସ୍ୱପ୍ନକୁ ସାମିଲ୍ କରିପାରିବାନି । "ତେଣୁ ତୁମେ ମୋତେ ବୁଝିବାକୁ ଚେଷ୍ଟା କରିବ ଯେହେତୁ ମୁଁ ତୁମକୁ ପିଲାଦିନରୁ ଆଜି ପର୍ଯ୍ୟନ୍ତ ସ୍ଥିର ଚିତ୍ତରେ ବୁଝିବାର ଉଦ୍ୟମ କଲି ।"

ମୁଁ ଜୋର୍‌ରେ ମୋ କ୍ରୀତଦାସ ମନକୁ ଟାଣିନେଲି ଘରଭିତରକୁ; ଦାରଣ୍ଡାରେ କିଛି ସମୟ ଛିଡ଼ା କରାଇବା ପରେ । ଲୁଗା ସବୁ ବଦଳାଇ ପଢ଼ାଘରେ ପ୍ରବେଶ କରିବା ସଙ୍ଗେ ସଙ୍ଗେ ପୁଣି ସେଇ ବିରକ୍ତି । ପ୍ରକାର ଥାକ ଥାକ ବିଭିନ୍ନ ଭାଷାର ପୁସ୍ତକ ଓ ବାପାଙ୍କର ଧର୍ମଶାସ୍ତ୍ରଗୁଡ଼ିକ ରହି ରହି କହୁଥିଲେ "ମୁଁ ବୋଲି କେହି ନାହିଁ । ସବୁ "ମୁଁ" ସେ ବହି ଭିତରେ ଲୁଚି ରହିଛି ।" ତେଣୁ ଏ କ୍ରୀତ-ଦାସ ମନ । ତୁ ମୋ ଭିତରେ ମଜ୍ଜିଯିବୁ । ସବୁ "ମୁଁ"କୁ ତ୍ୟାଗ କରି ମୋ ପାଦ-ପଦ୍ମରେ ଚିତ୍ତକୁ ସ୍ଥାପନା କର ।" ହଠାତ୍ ଅତିଶଯ୍ୟ ଘୃଣାରେ ମୁଁ ଗୋଟାଏ ମାଡ଼ରେ ସେଗୁଡ଼ିକୁ ଫୋପାଡ଼ି ଦେଲି । କାରଣ ମୁଁ ଜାହିର କରିବାକୁ ଚାହୁଁ ଥିଲି ମୁଁ ବୋଲି ଅସ୍ତିତ୍ୱ ଅଛି । ତଥାପି କ୍ୟାଲେଣ୍ଡର ଗୁଡ଼ିକ ମୋ ବାପାଙ୍କ ଆଖିଭଳି ନଚାଇ କହୁଥିଲେ ଯେ "ମୁଁ ବୋଲି ବର୍ତ୍ତମାନ ସୁଦ୍ଧା ମୋର ସଂଜ୍ଞା ନିରୂପିତ ହୋଇନାହିଁ । ତଥାପି ମୁଁ ଜୋର୍‌ରେ ଚିତ୍କାର କରି ଉତ୍ତର ଦେଲି । ନାଁ ମୁଁ ଅଛି··· ।" ଚାରିପାଖର ଶୂନ୍ୟତାରେ ସେ ଆବାଜ କିଛି କୋଳାହଳର ଶ୍ରଦ୍ଧା ଆଣିଲା । ମୋ ଚିତ୍କାରରେ ସମଗ୍ର ପରିବାରର ସଭ୍ୟମାନେ ମୋ ପ୍ରତି କରୁଣ ଦୃଷ୍ଟି ଆଣିବା ବେଳେ ମୁଁ ଅନୁଭବ କଲି ମୋ ନିଜର ପ୍ରଭୁତ୍ୱ ସେହି କୋଠରି ମଧ୍ୟରେ ।

ତଥାପି ମୁଁ ଲକ୍ଷ୍ୟ କଲି ମୋ ଚାରିପାଖରେ ଅସଂଖ୍ୟ କୋଠରି, ରେଷ୍ଟୋରାଁ ଠାରୁ ଘରପର୍ଯ୍ୟନ୍ତ ଆସିବା ଯାଏଁ ।···ମୋ କୋଠରିର ଚତୁଃକୋଣରେ ଅନେକ କୋଠରିର ଅଖିସବୁ ଲାଲବର୍ଣ୍ଣ ହୋଇଜଳୁଛି···ଆଉ 'ମୁଁ' ସେହି ଆଲୁଅରେ ନିଜକୁ ଚହ୍ଲାଇବାର ଚେଷ୍ଟା କରୁଛି ।



# ସଂଘର୍ଷ • • •

● ଅଧ୍ୟାପକ ଫନୀ ମହାନ୍ତି

ଅଶୋକ ଟ୍ରାନସପୋର୍ଟ କମ୍ପାନୀର ମୋଟର କେଇଖଣ୍ଡ ପ୍ରତ୍ୟେକ ଦିନ ବାରଟା ସମୟରେ ଅଶ୍ୱତ୍ଥ ବୃକ୍ଷ ମୂଳର ସେଇ ଅସମତଳ ଚଟାଣ ଉପରେ ଯୁଦ୍ଧ-କ୍ଷେତ୍ରର ପରାସ୍ତ ସୈନିକ ପରି ଦମ୍ ନିଅନ୍ତି । ଓ୍ୱାର୍କସପ୍‌ର କ୍ଲିନର ମମତାଜ ଅଳି ମାଟିଆ ହାଫ୍ ପ୍ୟାଣ୍ଟ ଓ ଖଣ୍ଡେ ହାତକଟା ଗେଞ୍ଜି ପିନ୍ଧି ବାଲ୍‌ଟି ଧରି ବାହାରିପଡ଼େ ହାଉର ଦର୍ପରେ । ସତେ ଅବା ସେ ଯୁଦ୍ଧକ୍ଷେତ୍ରରେ ନିଯୁକ୍ତି ପାଇଥିବା ଜଣେ ଦକ୍ଷ ଡାକ୍ତର । ସେ'କ ଆହତ ସୈନ୍ୟମାନଙ୍କର ସେବା ଶୁଶ୍ରୂଷା କଲାପରି, ଖୁବ୍ ଯତ୍ନର ସହକାରେ ପାଣି ଢାଳି ମୋଟରଗୁଡ଼ିକୁ ସଫା କରିବାରେ ଲାଗିଯାଏ । ଏ ଦୃଶ୍ୟ ଏକା ମୋ ଆଖିରେ ନୁହେଁ ଏ ସହରର ପ୍ରାୟ ଅଧିକାଂଶ ଲୋକଙ୍କ ଆଖିରେ ପଡ଼ିଛି । ଯେଉଁମାନେ ଅନ୍ତତଃ ପୋଲିସଲାଇନ୍ ଦେଇ ଦିନ ବାରଟାବେଳେ ଏଇ ରାସ୍ତାରେ କେବେ କେମିତି ଯାତାୟାତ କରିଥିବେ ।

ଅଶୋକ ଟ୍ରାନ୍‌ସପୋର୍ଟର ମୋଟରଗାଡ଼ି ମୋର କେଉଁ ଅବଚେତନ ମନରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି କରି ପାରିଲା, ତା'କୁ ଏତେ ସହଜରେ ହଜମ କରିବାର ଶକ୍ତି ତ ମୋର ଥିବା ଦରକାର । ସଂଘର୍ଷ ଭିତରେ ଜୀବନର ତାତ୍ପର୍ଯ୍ୟ ଉପଲବ୍ଧି କରାଯାଇପାରେ ବୋଲି ମୋର ବି ଦିନେ ଅନ୍ୟମାନଙ୍କ ପରି ଧାରଣା ଥିଲା । କିନ୍ତୁ ବାକ୍‌ଶକ୍ତିହୀନ ନିର୍ଜୀବ ମୋଟରଗୁଡ଼ିକଙ୍କର ଦମନୀୟ ପରିଣତି ନିଜ ଆଖିରେ ଦେଖିଲାଦିନୁ; ଜୀବନ ପ୍ରତି ମୋର ମନ ମୋ ଅଜାଣତରେ କେମିତି ବିତୃଷ୍ଣ ହୋଇପଡ଼ିଛି । ମୋ ମନଭିତରେ ଜମାଟ ବାନ୍ଧି ରହିଥିବା ଅଫଳନ୍ତ ଧାରଣା ହଠାତ୍ ଯେଉଁଦିନ ବରଫ ସ୍ରୋତପରି ତରଳିବାକୁ ଆରମ୍ଭ କଲା, ସେ ଦିନ ମୁଁ ବିଶେଷ ବିଚଳିତ ହୋଇ ପଡ଼ିଥିଲି ।

ମୋ ଆଗ ସାମ୍‌ନାରେ ଥୁଆ ହୋଇଥିବା ଗ୍ଲୁ କପ୍‌ଟିର କାହାଣୀ ମୁଁ ଇତି-ମଧ୍ୟରେ ପାଶୋରି ଦେଇଥିଲି । ଯୁଦ୍ଧଭୂମିରେ ଲଢ଼େଇ କରୁଥିବା ଏକ ସୈନିକର ସକଳ ଅନୁଭୂତିକୁ ହୃଦୟ ଭିତରେ ସାଉଁଟିଧରି ମୁଁ ଅନ୍ୟମନସ୍କ ହୋଇ ଅନେଇ ରହିଥିଲି ମୋଟରଗୁଡ଼ିକୁ । କମ୍ପାନୀର ମାଲିକ ସ୍ୱୟଂ ରଙ୍ଗଲାଲ ବାବୁ ମତେ ହଠାତ୍ ସତର୍କ କରିଦେବା ଢଙ୍ଗରେ କହିପକାଇଲେ ।

"ଜୀବନ ପ୍ରତି ଆପଣ ଯେତେ ମାତ୍ରାରେ ଉଦାସୀନ ହୋଇପଡ଼ିଲେଣି, ସେଥିରୁ ଯେ କେହି ଲୋକର ମନେହେବ ଯେ ଆପଣ ଖୁବ୍ ଶୀଘ୍ର ଗୌତମ ବୁଦ୍ଧଙ୍କ ଅରବିନ୍ଦ ପାଲଟିଯିବେ ।" ଶ୍ରୀମାନ୍ ରଂଗଲାଲ ବାବୁଙ୍କର ଅଭିଭାଷଣ ଶୁଣି ମୁଁ

ପ୍ରକୃତସ୍ଥ ହେଲାପରେ, ଅଭିନୟ କରିବା ଠାଣିରେ ଢକ୍ ଢକ୍ କରି ସବୁତକ ଗରମ ଚା' ମଦ ପିଇଲାପରି ପିଇ ଦେଲି । କୁଇନାଇନ୍ ପିଲ୍ ଖାଇ ପାଣି ପିଇଲାପରି ମୁଁ ଚା' ପର୍ବ ଶେଷ କରି ସିଗାରେଟ୍ କେସ୍‌ଟିକୁ ଉଣ୍ଡାଳି ହେଲି । ଜଣେ ସଭ୍ୟ ମଣିଷ ଯେଉଁ ଅବ୍ୟକ୍ତ ଯନ୍ତ୍ରଣାର ଶିକାର ହୋଇ ଏ ଦେଶରେ ମଦ ପିଏ କିମ୍ବା ସିଗାରେଟ୍ ପିଏ, ଯଦିଓ ମଦ କିମ୍ବା ସିଗାରେଟ୍ ପିଇବା ଆମ ସଭ୍ୟତାର ନମୁନା ନୁହେଁ । କିମ୍ବା ସଂସ୍କୃତିର ଐତିହ୍ୟ ନୁହେଁ । ଏକ ଅନାହୂତ ଯନ୍ତ୍ରଣାରେ ଛଟପଟ ହୋଇ ମୁଁ ଗରମ ଚା' କପ୍‌ରେ ମୋର ଶୁଖିଲା କଣ୍ଠନଳୀକୁ ଓଦା କରି ଶୀତଳ ବରଫର ସ୍ୱାଦୁ ଉପଭୋଗ କରିବି ବୋଲି ଯେମିତି ଏକ ଅପଚେଷ୍ଟା କଲି । କିନ୍ତୁ ତାହା ଶିମୁଳୀ ଫୁଲର ରଙ୍ଗ ନେଇ ମୋ ଆଖି ଆଗରେ ଏକ ପ୍ରତ୍ୟୟ ସୃଷ୍ଟି କରି ଚାଲିଗଲା ।

ଶ୍ରୀମାନ୍ ରଙ୍ଗଲାଲ ବାବୁ ଯେତେବେଳେ ନିଜେ ଅଶୋକ ମୋଟର କମ୍ପାନୀର ସର୍ବୋଚ୍ଚ କର୍ତ୍ତା ହୋଇବି ବନ୍ଧନ ଲାଇନ୍‌ରେ ଦିନରାତି ଘର୍ଘର ଶବ୍ଦ କରି ପ୍ରାଣମୂର୍ଚ୍ଛା ସଂଗ୍ରାମ କରୁଥିବା ଗାଡ଼ିବୁଢ଼ାଙ୍କର ଅବସ୍ଥା ନିଜ ଆଖିରେ ଦେଖିବି ବୁଝିପାରୁ ନାହାନ୍ତି ସେ ମୋ ମନ ଭିତରେ ଉଠେଇ ଥିବା ଝଡ଼ର ବ୍ୟାସାର୍ଦ୍ଧ ଏତେ ଶୀଘ୍ର ଅଙ୍କନ କରିପାରିବେ କେମିତି ? ମୁଁ ବୟସର ରଙ୍ଗୀନ୍ ମଦରେ ମାତାଲ ।

ମୋ ଆଗରେ କେତେ ଗଳି କେତେ ଉପଗଳି !! କଥା ହେଉଛି କେଉଁ ଗଳିରୁ ମୁଁ ମୋର ଯାତ୍ରା ଆରମ୍ଭ କରିବି ଏବଂ କେଉଁ ଉପଗଳିରେ ଶେଷ କରିବି । ଏଇ ଚିନ୍ତାରେ ମସ୍ତିଷ୍କ ମୋର ଭାରାକ୍ରାନ୍ତ ।

ମୁଁ ବୟସ୍କ ନୁହେଁ । କେତେ ବା ବୟସ ମୋର ! ସୁତରାଂ ସଂସାରୀ ହେବାର ପ୍ରଶ୍ନ ଉଠୁଛି କାହିଁକି । ସଂସାର ସଂପର୍କରେ ଅ, ଆ, କ, ଖ, ଜ୍ଞାନ ନ ଥାଇବି ମୁଁ ପରିବାର ନିୟନ୍ତ୍ରଣ ଯୋଜନାର ଏକ ଦକ୍ଷ କର୍ମଚାରୀ । ବିଭିନ୍ନ ସ୍ଥାନରୁ ମୁଁ ନିମନ୍ତ୍ରଣ ପାଏ ଭାଷଣ ଦେବାକୁ । ପରିବାର ଯୋଜନା ସପ୍ତାହ ଉତ୍ସବ ଉଦ୍‌ଘାଟନ କରିବାକୁ । ମୋ ଭାଷଣରୁ କିଛି ଉଦ୍ଧାର କରି ସଂବାଦପତ୍ରର ଶିରୋନାମା କରିବା ପାଇଁ ସାଂବାଦିକଦଳ ପାଗଳଙ୍କ ପରି ସଂଘର୍ଷ କରନ୍ତି । କାରଣ କଥା ହେଉଛି , ସରକାରଙ୍କ ଠେକ ଟାକ ଯେଉଁ ସାଂବାଦିକ ସ୍ୱର୍ଗରେ ଥୋଇ ପାରିଲା, ତା'ର ସେତିକି ପଦୋନ୍ନତି ହେଲା । ତା'ଙ୍କୁ ସରକାରୀ ଅନାବାଦୀ ଜମି ଅକ୍ଲେଶରେ ଭୁବନେଶ୍ୱରରେ ମିଳିଗଲା । ତା' ନାଁ ମନ୍ତ୍ରୀ, ମହାପ୍ରଭୁମାନଙ୍କ ସାଙ୍ଗରେ ମିଶି ପ୍ରକାଶ ପାଇଲା ।

ନିମ୍ନଗଛ ମୂଳେ ଦମ ନେଉଥିବା ମୋଟର ଗାଡ଼ିର ଅବସ୍ଥା ଯାହା; ଏ ସାଂବାଦିକ, ରାଜନୈତିକ ନେତା, ସରକାରୀ କର୍ମଚାରୀ ଓ ଅବଶେଷରେ ପ୍ରେମିକ ପ୍ରେମିକାଙ୍କ ଦଶା ସେଇଆ । ସମସ୍ତେ ଯୁଦ୍ଧ କ୍ଷେତ୍ରର ଗୋଟିଏ ଗୋଟିଏ ପରାସ୍ତ ସୈନିକ । ଯୁଦ୍ଧ ପ୍ରେମୀ ମଣିଷମାନଙ୍କର ଭାବି ବଂଶଧର କଥା ଚିନ୍ତା କରି ମୁଁ

ମି ସ୍ୱମାଣ ହୋଇ ପଡ଼ିଲି । ମୋ ରକ୍ତର ଉପନଦୀକୁ ଉଦ୍ଧାର ପାଇଁ ଯେଉଁ ଚପଳ-ମତି ଶିଶୁ ସଂଚାନଟି ତା'ର ପ୍ରଥମ ପାଦ ଏ ପୃଥିବୀରେ ରଖିବ ତାକୁ କ'ଣ ଦେଇ ମୁଁ ସ୍ୱାଗତ ଜଣାଇବି । ତା' ପୂର୍ବପୁରୁଷମାନଙ୍କର ଗୁଣାବଳୀ ବର୍ଣ୍ଣନା କରି ମୁଁ ତାକୁ କ ଉତ୍ସାହ ଦେବି ମଣିଷ ହେବାପାଇ ।

ତୁଇଟି ବିଶ୍ୱଯୁଦ୍ଧର ଅପରାହ୍ନ ଓ ଅନ୍ୟ ଏକ ନିଶ୍ଚିତ ଯୁଦ୍ଧର ପୂର୍ବାହ୍ନ ଆକାଶରେ ମୋର ଆବିର୍ଭାବ ଏକ କରାଳ ଧୂମକେତୁ ପରି । ମୁଁ ଅପରାହ୍ନର ଦୃଶ୍ୟ ଆଦୌ ଦେଖିନି । କାରଣ ସେତେବେଳକୁ ବୋଧହୁଏ ମୋର ମୁକ୍ତିକାମୀ ଆତ୍ମା ମାତୃ ଜଠରରେ ଚକ୍କର ଖୁଡ଼ୁଥିବ । ପୂର୍ବାହ୍ନର ଆକାଶ ମତେ ଗାଢ଼ ନୀଳ ଦିଶୁଛି । ଯେହେତୁ ମୁଁ ମୋ ଆଖିରେ ସମସ୍ତର ନୀଳ ଚଷମା ଲଗାଇ ଗୁରିଆଡ଼କୁ ଅନାଇ ଦେଖୁଛି ।

ମୁଁ ହସିଲି । ଏକ ନିଚ୍ଛକ ସରଳ ହସ । ମୋ ମନ ଭିତରର ସଂଘର୍ଷ ମନର କେଉଁ ଅନ୍ଧାରକକ୍ଷରେ ଲେସି ହୋଇଗଲା ପରି ମୋ ପ୍ରାଣର ଖୋଲା ହସ ସେମିତି ହୃଦୟ ଆକାଶ ଉପରେ ତାର ଫାଲପରି ବିସ୍ତୃତ ହୋଇ ପଡ଼ିଲା । କିନ୍ତୁ ଓଠର ସାମ୍ରାଜ୍ୟ ଡେଇଁ ମୁକ୍ତିଲାଭ କରିପାରିଲା ନାହିଁ ।

ଶ୍ରୀ ରଙ୍ଗଲାଲ ବାବୁ ମୋ ଆଡ଼କୁ ସିଗାରେଟ୍ ପ୍ୟାକେଟ୍‌ଟି ବଢ଼େଇ ଦେଇ ଦେଇ କହିଲେ, "ଦୀର୍ଘ ଅଠରବର୍ଷ କାଲ ମାଡ଼ ଖାଇ ଖାଇ ଆମ ପିଠି ଗୋଧି ଚମଡ଼ା ପରି ଟାଣ ହୋଇ ଯାଇଛି । ସେଥିପାଇଁ ଆମର ଦୃଷ୍ଟିକୋଣ ଆପଣମାନଙ୍କଠାରୁ ନିଶ୍ଚୟ ପୃଥକ୍ ହେବ ।"

ଆମ୍ଭଙ୍କେ ଦେହରେ ଏତେ ପ୍ରତିଭା ! ଭଗବାନ ଆପଣଙ୍କ ପ୍ରତି କେତେ ସଦୟ । ଅଥଚ ଆପଣ ଏ ବୟସରେ ଏତେ ଭାଙ୍ଗି ପଡ଼ୁଛନ୍ତି କାହିଁକି ? ସବୁକଥା ଉପରେ ଏତେ ଗୁରୁତ୍ୱ ଦେଲେ ଚଳିବ ?

ସଂଘର୍ଷ ଭିତରେ ଯେଉଁମାନେ କାର୍ଯ୍ୟାରମ୍ଭ କରନ୍ତି, ଶୁଣିଛି ସେମାନଙ୍କୁ କେଉଁଠି ସେଇ ସଂଘର୍ଷ ଭିତରେ କାର୍ଯ୍ୟ ଶେଷ କରିବାକୁ ମଧ୍ୟ ପଡ଼ିଥାଏ । ଏହା ଏକ ନିଷ୍ଠୁର ସତ୍ୟ ଘଟଣା ପରି ମୋ ଆଗରେ ଚଲାବୁଲା ଆରମ୍ଭ କରି ଦେଲା । ଅଶୋକ ଟ୍ରାନ୍ସପୋର୍ଟ ର ମୋଟର ଗୁଡ଼ିକୁ ଦେଖିସାରିବା ପରେ ।

ମୋର ମନେ ପଡ଼ିଗଲା ସେଇ ବିଗତ ବର୍ଷର ପ୍ରଥମ କେତୋଟି ଦିନର କଥା । ଡଃ ମିଶ୍ର ସେଦିନ ଭାବପ୍ରବଣ ହୋଇ କହିପକାଇଥିଲେ ଜୀବନରେ ମଣିଷ ହେବାକୁ ଇଚ୍ଛା କରୁଥିଲେ ତମକୁ ରାଜନୀତି ଗ୍ରନ୍ଥ ଦର୍ଶନ ଶାସ୍ତ୍ରରେ ଉଚ୍ଚଶିକ୍ଷା କରିବାକୁ ପଡ଼ିବ ସତେକ । ତାଙ୍କର କଥାକୁ ସେଦିନ ଦୈବ୍ୟବାଣୀ ପରି ମନେକରି ମୁଁ ଯେଉଁ ପିଚ୍ଛିଳ ପଥର ଯାତ୍ରୀ ହେଲି ଓ ପଥ ମଧ୍ୟରେ ଯେଉଁ ସବୁ ଅଦମନୀୟ ଅବସ୍ଥାର ସମ୍ମୁଖୀନ ହେଲି ସେ କଥା ମନେ ପଡ଼ିଲେ ଆଜି ବି ଉକ୍ତ କୋଠରୀର ପ୍ରତ୍ୟେକଟି କୋଷ ବେଲୁନ୍ ପରି ଫୁଲିଉଠେ ।

ବସ୍ତୁତର ଜଣାରେ ବାଷ୍ଟ ଧୂଞ୍ଜି ଯେଉଁମାନେ ମୋ ମନର ଆକାଶରେ ଇଚ୍ଛାକୃତ ଭାବରେ ଆସି ଧୂମକେତୁର ପ୍ରତ୍ୟକ୍ଷ ସୃଷ୍ଟି କରିଥିଲେ, ସେମାନେ ସେମିତି ସ୍ୱଇଚ୍ଛାରେ ଫେରିଗଲେ । ସେମାନଙ୍କର ଆସିବାରେ ମୁଁ ଯେମିତି ବିସ୍ମିତ ହୋଇ ନ ଥିଲି ଫେରିଯିବାରେ ବି ସେମିତି ଆଶ୍ଚର୍ଯ୍ୟ ହେଉନି । ମୋ ସୀମାବଦ୍ଧ ଆକାଶର ବାୟୁମଣ୍ଡଳ ଭିତରେ ପକ୍ଷ ଉତ୍ତୋଳନ କରି ଉଡିବୁଲିବାକୁ ସେମାନଙ୍କ ମଧ୍ୟରେ ଯେମିତି ଏକ ସଂଘର୍ଷର ସୂତ୍ରପାତ ହୋଇଥିଲା । ମୋର ବିପର୍ଯ୍ୟୟରେ ଉପହାସ କରି ଡେଣା ହଲାଇ ନିଶ୍ଚିହ୍ନ ହୋଇ ଯିବାପାଇଁ ସେମାନେ ସେମିତି ନିଶ୍ଚିତ ଭାବରେ ମିଳିତ ଉଦ୍ୟମ ଆରମ୍ଭ କରିଦେଲେ । ମଦ୍ୟପ ପୁରୁଷଙ୍କ ପରି ହତାହତ ଜ୍ଞାନ ହରାଇ ମୁଁ ଯେତେବେଳେ ସେମାନଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କରୁଥିଲି । ପ୍ରତ୍ୟେକ ମୋ କାଚ ଆଖିର ପରଦା ଉପରେ ଏକ ଏକ ବିଚିତ୍ରବର୍ଣ୍ଣୀ ବାରାଙ୍ଗନା ପରି ଦୃଶ୍ୟ ହେଉଥିଲେ ।

ଅଲକା କଥା ବର୍ତ୍ତମାନ ନ କହିଲେ ଭଲ । କାରଣ ସେ ତିନୋଟି ପିଲାର ମା ଏବଂ ତା' ସ୍ୱାମୀ ଅଲ୍ପଦିନ ତଳେ ଦଣ୍ଡକାରଣ୍ୟରେ କ'ଣ ଗୋଟାଏ କାମ ପାଇ ତାକୁ ସାଙ୍ଗରେ ନେଇ ଯାଇଛି । ଅର୍ଚ୍ଚନା କଥା ମନେପକାଇ ଲାଭ ନାହିଁ । ଯେହେତୁ ସେ ପ୍ରେମିକ ମହିଳାପରି ଗୋଟିକ ପରେ ଗୋଟିଏ ପୁରୁଷଙ୍କୁ ପ୍ରେମକରି ଚାଲିଛି । ବାକି ରହିଗଲା ଖାଲି ଅଞ୍ଜନା । ଯିଏ ଭଗବତ୍ ଗୀତା ଛୁଇଁ ଦିନେ ମୋ ଆଗରେ ଶପଥ କରି ଦେଇଥିଲା ମୃତ୍ୟୁ ପର୍ଯ୍ୟନ୍ତ ମୋରି ସାଙ୍ଗରେ ସାଥୀ ହୋଇ ରହିବା ପାଇଁ ।

ଅଲକା, ଅର୍ଚ୍ଚନା ଓ ଅଂଜନା ସହିତ ମୋର ସଂପର୍କ ଯାହା; ଅଶୋକ ମୋଟର ସର୍ଭିସ କଂପାନୀର ମୋଟରଗୁଡ଼ିକ ସହ ରଙ୍ଗଲାଲ ବାବୁଙ୍କ ସଂପର୍କ ସେଇଆ । ପ୍ରତ୍ୟେକଟି ଟ୍ରିପ୍ ଶେଷରେ ହୋଇଥିବା ଆୟବ୍ୟୟର ନିର୍ଭୁଲ ହିସାବ ରଙ୍ଗଲାଲବାବୁଙ୍କ ମ୍ୟାନେଜର କଷି ବାହାର କଲା ପରି, ଉପରୋକ୍ତ ପ୍ରତ୍ୟେକଟି ଝିଅ ସହିତ ସଂପର୍କର ସେତୁବନ୍ଧ ନିର୍ମାଣ କରିସାରିଲା ପରେ ମୁଁ କ'ଣ ପାଇଲି, କ'ଣ ନ ପାଇଲି, ତାକୁ ମୋ ହିସାବ ଖାତାରେ ଟିପି ରଖିଛି ।

ସୈନିକ ଯୁଦ୍ଧଭୂମିରେ ସଂଗ୍ରାମ କରି କ୍ଲାନ୍ତ ହୋଇଗଲା ପରି ମୁଁ ପ୍ରେମକରି କ୍ଲାନ୍ତ ହୋଇ ପଡ଼ିଛି । ଯଦିଓ ପ୍ରେମ ବଜାରରେ କ୍ଲାନ୍ତି, ବିଷାଦ, ଅବସାଦ ଏକ ସଂକ୍ରାମକ ବ୍ୟାଧି ପରି ସବୁ ପ୍ରେମିକଙ୍କୁ ଗ୍ରାସ କରିଥାଏ । ସଂଘର୍ଷ ଭିତରେ ଆତ୍ମ ସମପ୍ରେ ଚାଲିଛି କେଉଁ ପ୍ରାକ୍ ଐତିହାସିକ ସଭ୍ୟତାର ଶବକୁ କାନ୍ଧରେ ପକାଇ ।

ଏପୋଲ ୧୩ରେ ଯାଇଥିବା ମହାକାଶଚାରୀଙ୍କର ସଂଘର୍ଷର ଉଦ୍ଦେଶ୍ୟ ଯାହା, ଅଞ୍ଜନା, ଅର୍ଚ୍ଚନା ଓ ଅଲକା ସହିତ ମୋର ସଂଘର୍ଷର କାରଣ ସେଇଆ । ମୋ ନିଜ ସଂଘର୍ଷ ସହିତ ଭିଏତ୍ନାମ ସେନାବାହିନୀର ସଂଘର୍ଷ ପ୍ରାୟ ଏକାଧାରରେ । କଥା

ହେଉଛି, କେଉଁଠି ବୁଲେଟ୍, ବାୟୁନଟ୍ ବାଜି ରକ୍ତର ସ୍ରୋତ ଛୁଟୁଛି ତ; ଅନ୍ୟ କେଉଁଠି ହୃଦୟକୁ ଛଲ ଛଲ କରି ହତ୍ୟା କରାଯାଉଛି ନିର୍ମମ ଭାବରେ ।

ଆମେ ସମସ୍ତେ ଏମିତି ଏକ ସତ୍ୟଯୁଗର ମଣିଷ । ଯେଉଁଠି ସଂଘର୍ଷ, ଯୁଦ୍ଧ, ବିପ୍ଳବ, ଶୋଭାଯାତ୍ରା ଓ ରକ୍ତପାତ ଭିତରେ ଆମେ ଆମର କାର୍ଯ୍ୟ ହାସଲ କରୁ । ଆମର ସଂବାଦପତ୍ର ସେଇ ଲୋମହର୍ଷଣକାରୀ ଘଟଣାରେ ପରିପୂର୍ଣ୍ଣ । ଗଳ୍ପ, ଉପନ୍ୟାସ ସବୁ ଭୟଙ୍କର ଭାବରେ ସାଂଘାତିକ ।

ବଞ୍ଚିବାର ମୋହ ଆମକୁ ବାନ୍ଧି ରଖିଛି ପୋଷା କୁକୁର ପରି । ଆମେ ନିର୍ଜୀବ ମୋଟର ଭଳି, ଅଳକା, ଅଞ୍ଜନା ଓ ଅର୍ଚ୍ଚନା ପରି, ମୋ ପରି, ରଙ୍ଗଲାଲ ବାବୁଙ୍କପରି ଓ ସର୍ବଶେଷରେ ମହାକାଶ ଯାତ୍ରୀମାନଙ୍କ ପରି ବଞ୍ଚି ରହିବୁ । ଠିକ୍ ଯେମିତି କଚ୍ଛଦନ ତଳେ ଜଣେ ଆମେରିକାବାସୀ ବାଷ୍ପରୁଦ୍ଧ କଣ୍ଠରେ କହିପକାଇ-ଥିଲେ ସେଇ ଚତୁର୍ଥ ମହାକାଶଯାତ୍ରୀଙ୍କର ଅସୀମ ଦୟା ଓ ଅପାର କରୁଣା ଉପରେ ସବୁକିଛି ନିର୍ଭର କରୁଛି । ଆଉ ସେ ହେଉଛନ୍ତି ସ୍ୱୟଂ ଭଗବାନ୍ !

ମୁଁ ହସିଲି ।

ରଙ୍ଗଲାଲବାବୁ ବି ହସି ଉଠିଲେ ।

ମୋର ଯାତ୍ରା କେଉଁ ଗଳିରୁ ଆରମ୍ଭ ହୋଇ କେଉଁ ଉପଗଳିରେ ଶେଷ ହେଲା ତାହା ମୁଁ ଜାଣିପାରିଲିନି ।



অ শ্রু মু খী

● "নিরুপমা ভাবুথিলা—কেতে সুন্দর যুবক থান্তি । যাহাঙ্କর রূপ সুন্দর ন হେলেব কথাবার্তা, চালচলনরে এমিতি একে মধুর ব্যক্তিত্বর আকর্ষণ থাএ যে···মন উন্মাদ হোইযাএ ।" "পাপগর্ভ ধারণ করি সমাজরে সুদর্শনর সেই কলঙ্কিত···

● "ছি ছি···এমিতি କ'ଣ ହେଉଛ ? ଥାଉ···ଆଃ—।" ମୃଦୁ ପ୍ରତିବାଦ କଲେ ବି ସୁଦର୍ଶନର ଚୁମ୍ବନ ଭିତରେ, ନିବିଡ଼ ଆଲିଙ୍ଗନ ଛାପରେ ନିଜକୁ ହଜାଇ ଦେବାର ଅଦମ୍ୟ କାମନାକୁ ସେ ରୋକିପାରେ ନାହିଁ ।

● ଶ୍ରୀ ବିପିନ ହୋତା

[ 'ଗଳ୍ପ'—୨ୟ ସଂକଳନରେ ବନଜ ଦେବୀଙ୍କ ଗଳ୍ପ ଅଶ୍ରୁମୁଖୀ ପଢ଼ିଲା ପରେ ହଠାତ୍ ଧାରଣା ହେଲା ଅନ୍ତରାଳରେ ନିରୁପମା ସତେ ଯେମିତି ଅନେକ ଅବରୁଦ୍ଧ ଗୋପନତା ନେଇ, ଲୁଚି ରହି ସମାଜକୁ ଫାଙ୍କି ଦେବାର ପ୍ରୟାସ କରୁଛି— ଲେଖକ । ]

"ନିରୁପମା ଭାବୁଥିଲା—ନିହାରିକା କଥା । କାନ୍ଦି କାନ୍ଦି ସିଏ ଲୁହର ନଦୀ ହୋଇ ବହି ଯାଉଥିଲା । ଆଃ ! କି ଗଭୀର ଆତ୍ମ ବିଶ୍ୱାସରେ ସେ କହୁଥିଲା— ସେ କେତେ ସଚ୍ଚୋଟ....କେତେ ଭଲ...ମୋଠୁ ତାଙ୍କୁ ବେଶୀ କିଏ ଜାଣେ ? ତଥାପି···ତଥାପି "

ବିଚାରୀ ନିହାରିକା ମରୀଚିକାରେ କେତେ ବିଶ୍ୱାସ କରିଥିଲା । ସୂର୍ଯ୍ୟାସ୍ତର ରଙ୍ଗକୁ ବାନ୍ଧି ରଖିବାର କେତେ ବ୍ୟର୍ଥ ପ୍ରଚେଷ୍ଟା କରୁଥିଲା । ସ୍ୱାମୀ ସୁଦର୍ଶନର ପ୍ରେମ, ସର୍ବଗ୍ରାସୀ କାମନାର ବନ୍ୟାରେ ଉଚ୍ଛୁଟ୍ଟ ହୋଇ ଭାବୁଥିଲା—ବେଶ୍ ଅଛି । ହୁଣ୍ଡା ସ୍ୱାମୀର ଆତ୍ମୋତ୍ସର୍ଗର ଦୁର୍ବଳତା ଭିତରେ ରାଜରାଣୀର ମନ ନେଇ ସେ ବେଶ୍ ଅଛି ।

କିନ୍ତୁ ବିଚାରୀ ଜାଣିପାରିଲା ନାହିଁ ସରଳ, ସଚ୍ଚୋଟ ବିଚାର ବିଭାଗୀୟ ମାଜିଷ୍ଟ୍ରେଟ, ତା'ର ସ୍ୱାମୀ ସୁଦର୍ଶନ କାହିଁକି ଆତ୍ମହତ୍ୟା କଲା ।

କେଉଁ ଦୁଃଖରେ ?

× × × × ×

ସଙ୍ଗିନୀ ନିରୁପମା ଏକା ଜାଣିଥିଲା ଏ ଆତ୍ମଘାତୀ ହେବାର କାରଣ । କେଉଁ ମନ ନେଇ ଖୁବ୍ ଆଦରର ସ୍ତ୍ରୀ, ଗୁଲଗୁଲିଆ ପୁଅଝିଅ ସମସ୍ତଙ୍କୁ ଛାଡ଼ି ସୁଦର୍ଶନ ଆତ୍ମହତ୍ୟା କଲା ।

କାହାକୁ ଫାଙ୍କିବା ପାଇଁ ?

ନିଜକୁ ??

ତା ଭାଇର ବନ୍ଧୁ ସୁଦର୍ଶନ । ସଦା ହର୍ଷୋତ୍ଫୁଲ୍ଲ, କର୍ମତତ୍ପର । କଥାବାର୍ତ୍ତା, ଚାଲିଚଳନରେ ସବୁବେଳେ ପ୍ରାଣ ଉଲସା ଆଚ୍ଛନ୍ନ କରିଦେବାର ଭାବ । କେତେ ସଚ୍ଚୋଟ···କେତେ ଭଲ··· ।

ନିରୁପମା ଭାବୁଥିଲା—କେତେଗୁଡ଼ିଏ ଯୁବକ ଥାଆନ୍ତି ଯାହାଙ୍କର ରୂପ ସୁନ୍ଦର ନ ହେଲେ ବି କଥାବାର୍ତ୍ତା, ଚାଲିଚଳନରେ ଏମିତି ଏକ ମଧୁର ବ୍ୟକ୍ତିତ୍ୱର ଆକର୍ଷଣ ଥାଏ ଯେ—ହଠାତ୍ ମନ ଓଟାରି ହୋଇଯାଏ—ବାନ୍ଧିହେଲାଭଳି ହୋଇଯାଏ ।

ସେ ଝିଅଟି ବି ଏଇ ଆକର୍ଷଣରେ ବାଧାବନ୍ଧନ କିଛି ମାନିଲା ନାହିଁ । ଜଣାଶୁଣା, ଖୁବ୍ ଆପଣାର । ପ୍ରତିଦିନ ସୁଦର୍ଶନ ଯାଏ··କଥା କହେ, ମଜା କରେ । ସଭିଙ୍କୁ ହସାଏ, ହସେ । ଝିଅଟି ସହିତ ଏଇ ଭଲ ମିଶିବା ଭିତରେ ହଠାତ୍ ଦିହେଁ ଆବିଷ୍କାର କଲେ ସେ ଉଭୟେ ଉଭୟଙ୍କୁ ଭଲ ପାଇ ସାରିଛନ୍ତି । ଦିନେ ନ ଆସିଲେ ସୁଦର୍ଶନକୁ ବ୍ୟାକୁଳ ଲାଗେ । ବିନି ତ କାନ୍ଦି କାଟି ଅସ୍ଥିର ହୋଇଯାଏ । ବଗିଚାରୁ ଗୋଲାପ ଫୁଲ ସବୁ ଛିଣ୍ଡାଏ—ଫିଙ୍ଗେ ।

ପଢ଼ାରେ ମନ ଲାଗେନି ।

ଝରକା ଦେଇ ଦୂରର ରାସ୍ତାକୁ ଅନେଇ ରହେ ।

ବିରକ୍ତ ଲାଗେ । କାନ୍ଦ ଲାଗେ । ଅଭିମାନ କରେ ।

ତା ପରଦିନ—

ସୁଦର୍ଶନକୁ କିଛି ବେଶୀ ଚେଷ୍ଟା କରିବାକୁ ପଡ଼େ ନାହିଁ ବିନିର ଏ ଅଭିମାନ ଭାଙ୍ଗିବାକୁ । ଉଦାସୀ ମୁହଁଫୁଲା କୃତ୍ରିମ ପ୍ରଚେଷ୍ଟା ପଣ୍ଡ କରିଦେଇ ସେ ବନ୍ଧିଯାଏ—ଲେଟିଯାଏ । ସାମାଜିକତାର ସ୍ୱାଭାବିକ ଫାଙ୍କକୁ ସେମାନେ ନିଜ ଅଜାଣତରେ ଡେଇଁ ଡେଇଁ ଯାଆନ୍ତି ।

ବାରିପଟ ଫାଟକ ପାଖରେ ଜହ୍ନ ଆଲୁଅ ଆହୁରି କମନୀୟ ହୁଏ, ଆହୁରି ମଧୁର ଗନ୍ଧରେ କିଆବଣ ପୋଖରୀର କଇଁଫୁଲର ଗନ୍ଧ ମହୁଆଳିଆ କରିଦିଏ ।

"ଏତେ ରୂପ କାହା ପାଇଁ ରଖିଛ ବିନି ? ରାତିର ଅନ୍ଧକାର ପରି ଏ କେଶର ସାଗର, ଶ୍ୱେତପଦ୍ମର ଶୋଭା ଜିଣି ଏ ବକ୍ଷ ! ଆଉ ଏ ଆଖି—ଆଖି ନୁହେଁ ତ—ସତେକି ନୀଳ ସାଗରର ଦୁଇଟି ପକ୍ଷୀ, କେତେ ସୁନ୍ଦର, କେତେ ଚଞ୍ଚଳ !! ଆଉ ଏ ଅଧର···କେତେ ମଧୁ, କେତେ ଅମୃତ..."

"ଛି ଛି...ଏମିତି କ'ଣ ହେଉଛ ? ଆଉ...ଆଃ—।" ମୃଦୁ ପ୍ରତିବାଦ କଲେ ବି ସୁଦର୍ଶନର ଚୁମ୍ବନ ଭିତରେ, ନିବିଡ଼ ଆଲିଙ୍ଗନ ଚାପରେ ନିଜକୁ ହଜାଇ ଦେବାର ଅଦମ୍ୟ କାମନାକୁ ସେ ରୋକିପାରେ ନାହିଁ।

କେତେ କଦମ୍ବ ଫୁଟେ।

ନୀଳ ଆକାଶର ନୀଳିମାକୁ ଚୁହିଁ ଚୁହିଁ କୃଷ୍ଣଚୂଡ଼ାର ସ୍ତବକରେ ଭରିଉଠେ ଗଣି ଗଣି ଫୁଲ। ଲାଲ୍...ସୂର୍ଯ୍ୟାସ୍ତର ଆକାଶଠୁ ବଳି।

ପ୍ରଭାତ ହେବାର ଅନେକ ଆଗରୁ ବଗିଚାର ଶିଶିର ସିକ୍ତ ପଥରେ ହସ୍ତ ପାଦ ଚାଲି, ବନ ଫେରିଆସେ।

ବିଛଣାରେ ପଡ଼ି ମଧୁର ନିଶାର କ୍ଳାନ୍ତିରେ ଅଖିବୁଜି ବୁଡ଼ିଯାଏ ଅନେକ ସ୍ୱପ୍ନରେ।

ଏମିତି ଅନେକ ରାତି—ଅନେକ ନିଶାର୍ଦ୍ଧ।

ଏମିତି ସୁଦର୍ଶନର ପ୍ରେମର ସ୍ୱାକ୍ଷର ଲିଭାଇବାର ବ୍ୟର୍ଥ ପ୍ରୟାସରେ କେତେ ପ୍ରଭାତ କଟିଯାଏ...।

କିନ୍ତୁ ଏ ଯେ ଏକ ନୂତନ ସ୍ୱାକ୍ଷର !

ଏହାକୁ ଲିଭାଇବ କିପରି ?

ଅଜଣା ଆଶଙ୍କାରେ ତା ମନ ବ୍ୟାକୁଳ ହୁଏ। ଅହରହ ଯନ୍ତ୍ରଣା ଜର୍ଜରିତ ମନ କାନ୍ଦେ, ବାହୁନେ। ନିଜକୁ ଅଭିଶାପ ଦିଏ।

"ମୁଁ କ'ଣ କରିବି ? ଏ ସମାଜ ମୋତେ କୁଳଟା କହିବ—କୁମାରୀ ହୋଇ ତୁମ ସନ୍ତାନର ଜନନୀ ହେବା ଆଗରୁ ତୁମେ ମୋତେ ବିବାହ କରିନିଅ। ମୋ ଆଗରେ ସବୁ ଆଲୋକର ପଥ ଆଜି ଅବରୁଦ୍ଧ ହୋଇଗଲା। ତୁମେ ମୋତେ ବିବାହ କର। ନ ହେଲେ ଏ ନଈକୁ ଡେଇଁ ପଡ଼ିବା ବ୍ୟତୀତ ମୋ ଆଗରେ ଆଉ କିଛି ପଥ ନାଇ। ମୋ ଦୁନାଟି ପରା, ଆଉ ଜମା ଡେରି କର ନାହିଁ। ଅବସ୍ଥା ଜଟିଳ ହେବା ଆଗରୁ—ଲୋକେ ଜାଣିବା ପୂର୍ବରୁ ତୁମେ ମୋତେ ବିବାହ କରିନିଅ।"

—କାନ୍ଦେ ବନ। ଆଖିରୁ ଝରଣା ହୋଇ ଲୁହ ସବୁ ବୋହିଯାଏ। କୋଳରେ ମୁଣ୍ଡବାଲ ଛିଣ୍ଡାଏ। ସୁଦର୍ଶନର ପାଦଧରି କାକୁତି କରେ, ନିବେଦନ କରେ।

ସୁଦର୍ଶନ ନିର୍ବିକାର। ହାଇସ୍କୁଲର ଫୁଟବଲ ଟିମର ଚମ୍ପିଆନ ଥିଲା ସେ। ବହୁତ ଭଲ ଖେଳାଳୀ। ଫାଉଲ ଖେଳ, ରେଫରୀ ପାଖରୁ ଅନେକ ସାବଧାନ, ସତର୍କବାଣୀ ଶୁଣି ବି ନିର୍ଦ୍ୱନ୍ଦ୍ୱରେ ସେ ଖେଳେ। ଏ ବି ସେମିତି ଏକ ଖେଳ। ହୁଏତ ଫାଉଲ ହୋଇଗଲା। କିନ୍ତୁ ସେ କ'ଣ ଏତିକରେ ହାରିଯିବାର ସ୍ୱୀକୃତି ଦେଇ ପାରିବ ?

ଅସମ୍ଭବ—ଅସମ୍ଭବ ।

ସେ ଫାଙ୍କିଦିଏ । ବନିର ସମସ୍ତ ଆଶା ଜହ୍ନର ନିବେଦନ ବ୍ୟର୍ଥ ହୋଇଯାଏ । ବନିର ମା’ ଜାଣିଲେ । ପିତା ରାସବିହାରୀ ବାବୁ ଜାଣିଲେ ।

ଏକମାତ୍ର ଝିଅର ଏ ଦୁର୍ଦ୍ଦଶା ପାଇଁ ସେ କ’ଣ କରିବେ ?

କିପରି ସ୍ୱା’ର ସମାଧାନ କରିବେ ?

ବୃଦ୍ଧ ରାସ ବିହାରୀବାବୁ ସୁଦର୍ଶନକୁ ବହୁତ ନେହୁରା ହେଲେ, ତା ବାପାଙ୍କୁ ମିନତି କଲେ । କିନ୍ତୁ ଶେଷରେ ଲାଜ, ଦୁଃଖ ଯନ୍ତ୍ରଣାରେ ଜର୍ଜରିତ ହୋଇ ଫେରି ଆସିଲେ । ସୁଦର୍ଶନର ବାପା ବଡଲୋକ । ତାଙ୍କ ଭୟରେ ଗାଁର ଅନ୍ୟାନ୍ୟ ମୁଖିଆ-ମାନେ ମଧ୍ୟ ଚୁପ୍ ରହିଲେ ।

ଶେଷରେ ସୁଦର୍ଶନ ସହିତ ହଠାତ୍ ନଈ କୂଳରେ ଦେଖାହେଲା ବନିର ।

ଦୁଃଖ, ରାଗ, ଘୃଣାରେ ଫୁଲି ଫୁଲି, ଆଖିରୁ ଲୋତକ ଢାଳି ଢାଳି ବନି କହିଲା, “ମୋ ଜୀବନକୁ ଇମିତି କାହିଁକି ନଷ୍ଟ କରି ଦେଲ ? ମୋ ଭିତରେ କେତେ ସ୍ୱପ୍ନ ଜଗାଇଥିଲ, ବିବାହ କରି ରଙ୍ଗୀନ ନିଶାରେ କିମିତି ଜୀବନ କଟାଇବା ସେ ସ୍ୱପ୍ନର ମହଲ ତିଆରି କରୁଥିଲ । ସେ ଖାଲି ତେବେ ଛଳନା ? ଏତେ କଥା ତୁମ ମନରେ ଯଦି ଥିଲା, ଭଲ ପାଇବାର ଅଭିନୟ କାହିଁକି କରୁଥିଲ ? ତୁମେ ପଶୁ, ରାକ୍ଷସ !! ମୋ ଜୀବନଟା ନଷ୍ଟ ହୋଇଗଲା, ଆତ୍ମହତ୍ୟା କରିବା ବ୍ୟତୀତ ମୋର ଆଗରେ ଆଉ କେଉଁ ପଥ ବାକି ରହିଲା ? ତୁମେ ହିଁ ମୋର ମୃତ୍ୟୁ ପାଇଁ ଦାୟୀ···ତୁମେ; ତୁମେ ପଶୁ, ରାକ୍ଷସ !!”

କାନ୍ଦି କାନ୍ଦି, କୁହୁଳି କୁହୁଳି ବନି ଜଳୁଥିଲା । ଘୃଣାରେ, ଲୋତକ ପୂର୍ଣ୍ଣ ଚକ୍ଷୁରେ ଦେଖୁଥିଲା ସୁଦର୍ଶନ ବଇଁଶୀ ଧରି ନିର୍ବିକାର ଭାବରେ ଗୁଣୁ ଗୁଣୁ ଗୀତ ଗାଇ ନଈଘାଟ ତଳେ ତଳେ ଚାଲି ଯାଉଛି ।

ସେଇ ଦିନ ସଂଧ୍ୟା ପରେ ହିଁ ଶୁଣାଗଲା—ବନି ନଈକୁ ପାଣି ପାଇଁ ଯାଇ ଖସି ପଡ଼ିଛି । ରାତିର ଅନ୍ଧକାରରେ ଖାଲି ବ୍ୟର୍ଥ ହୋଇ କୂଳରେ ମୁଣ୍ଡ ଦାଡ଼େଇବା ବ୍ୟତୀତ ଆଉ କିଛି ଉପାୟ ନ ଥିଲା । ସକାଳୁ ଗଣ୍ଡିର ଅନେକ ତଳେ କୂଳର କଣ୍ଟାଗଛରେ ବନିର ଶାଢ଼ୀଟି ହିଁ ସେମାନେ ଉଦ୍ଧାର କଲେ ।

ଦୁନିଆସାରା ଜାଣିଲା ପାଣି ପାଇଁ ଯାଇ ଗୋଡ଼ ଖସିଯିବାରୁ ବନି ନଈରେ ପଡ଼ି ଭାସି ଯାଇଛି, ମରି ଯାଇଛି । ଅସମାପ୍ତ ଭାବରେ, ଅସମୟରେ ବସୁଧାର ଜୀବନ ଛନ୍ଦ ହଜିଗଲା—ଏ ଦୁନିଆର ହଟଗୋଳ, ଉଠପଡ଼ ସମାଜ ତା’ର ହିସାବ ବି ରଖିଲା ନାହିଁ ।

ଗୁଣ୍ଡାମିର ପରିଣତି ଏଇପରି ହେଲା । ସୁଦର୍ଶନ ପଚ୍ଛକୁ ଭାବିଲା କେବଳ ତା’ରି ଯୋଗୁ ହିଁ ବସୁଧା ମଲା । ସେ ରାତି ସ୍ୱପ୍ନ ଦେଖିଲା—ଦାନ୍ତ ନିକଟି ବନିର

ପ୍ରେତାତ୍ମା ରାକ୍ଷସୀ ପରି ଧାଇଁ ଆସୁଛି—ତାର ସୁଖ ସମ୍ଭୋଗ ସବୁରେ ନିଆଁ ଜଳାଇ। ଅନ୍ଧକାର ହୋଇ ବିନି ଯେମିତି କାମୁଡ଼ି ଗୋଡ଼ାଇ ଆସୁଛି।

ଦୀର୍ଘ ପନ୍ଦର ବର୍ଷ ପରେ—।

ସୁଦର୍ଶନର ଶିକ୍ଷା ତାଙ୍କୁ ପରିମାର୍ଜିତ କଲା ପରେ—ଆନ୍ତରିକ ଗମ୍ଭୀର ଭାବରେ ହୃଦୟଙ୍ଗମ କଲା— ତାର ନିଷ୍ଠୁର କୃତକର୍ମ। ଅନୁତାପର ଦହନରେ ସେ କୁହୁଳିଲା, ଜଳିଲା। ନିହାରିକାକୁ ବିବାହ କରି, ପ୍ରାଣର ସବୁକିଛି ଅଜାଡ଼ି ଦେଇ ସୁଖ ସମ୍ଭୋଗର ପାହାଡ଼ଚୂଡ଼ାରେ ବସାଇ, ପୂଜାକରି ସଚେତନ ପ୍ରାୟଶ୍ଚିତ କରୁଥିଲା। ବିନିର ଅମୋଘ ଆଘାତ୍ ରକ୍ଷାପାଇବା ପାଇଁ ସଚେତନ ନିହାରିକାର ଅଞ୍ଚଳ ତଳେ ସେ ହଜିଯିବାକୁ···ଲୁଚିଯିବାକୁ ଗୃହ୍ଣୁ ଥିଲା।

"କିନ୍ତୁ ଦୀର୍ଘ ପନ୍ଦର ବର୍ଷ ପରେ ସ୍ୱାଭାବିକ ଭାବରେ, ତାର ସେ ଅନୁତାପ ଓ ପ୍ରାୟଶ୍ଚିତ ପରେ; ସୁନ୍ଦରୀ ସ୍ତ୍ରୀର ପ୍ରେମ, ଟିକି ଟିକି ସୁନ୍ଦର ପୁଅଝିଅଙ୍କ ଭିତରେ ସୁଖରେ ରହି ଆସ୍ତେ ଆସ୍ତେ ସେ ଭୁଲିଯିବା କଥା !"—ଅଧ୍ୟାପକ ଚନ୍ଦ୍ରଶେଖର ଟିପ୍ପଣୀ ଦେଲେ—

"ହଁ, ସେ ହୁଏତ ଭୁଲିଯିବାର ଚେଷ୍ଟା କରୁଥିଲା—ଭୁଲିଯାଇ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ଭିତରେ ସ୍ତ୍ରୀ ପୁଅ ଭିତରେ ସମ୍ପୂର୍ଣ୍ଣ ରୂପେ ହଜିଯାଇ ପାରିଥାଆନ୍ତା ; କିନ୍ତୁ ପଛକୁ ପଛକୁ ସେ ବେଶୀ ଭାବପ୍ରବଣ ହୋଇ ଉଠିଲା। କୃତକର୍ମ ପାଇଁ ଅହରହ ଭାବିବାକୁ ଲାଗିଲା । ଆଉ ସବୁଠୁ ଆଶ୍ଚର୍ଯ୍ୟ କଥା, ସୁଦର୍ଶନ ଆତ୍ମହତ୍ୟା କରିବାର ପୂର୍ବଦିନ ସଞ୍ଜବେଳରେ ବିନିକୁ ଦେଖିଥିଲା।"

"ବିନି ବଞ୍ଚିଛି ?"—ଚିତ୍କାର କରି ଉଠିଲେ ଚନ୍ଦ୍ରଶେଖର।

"ହଁ, ସେ ଅଦ୍ୟାପି ବଞ୍ଚିଛି ଏବଂ ଏଇ ସହରରେ ଅଛି। ବିନି ମୋର ପିଲାଦିନର ସାଥୀ। ସୁଦର୍ଶନ ବି ଭାଇଙ୍କର ଖୁବ୍ ଆପଣାର ବନ୍ଧୁ। ବିନି ଖବର ମୁଁ ସବଦା ରଖିଥିଲି । ମୋ ପାଖରେ ସେ ତାର ଦୁଃଖ ଜଣାଉଥିଲା—ବିଶ୍ୱାସ କରୁଥିଲା।

ସେ ମରିଯିବା ଖବର ପାଇଲା ପରେ ମୁଁ ନିଶ୍ଚିତ ଭାବେ ଜାଣିଲି ଯେ ସେ ଆତ୍ମହତ୍ୟା କଲା। ପରିଗର୍ଭଧାରଣ କରି ସମାଜରେ ସୁଦର୍ଶନ ସେହି କଳଙ୍କିତ, ଅସ୍ୱୀକୃତ ବାଛରକୁ ନେଇ ମୁଣ୍ଡଟେକି ପାରିବନି ବୋଲି ନିଜକୁ ନିଃଶେଷ କରିଦେବା ପାଇଁ ନଈକୁ ଡେଇଁ ପଡ଼ିଲା; କିନ୍ତୁ ଭାଗ୍ୟର ବିଧାନ ଭିନ୍ନ ପ୍ରକାର। ଅଚେତନ ଭାବରେ ବିବସ୍ତ୍ର ହୋଇ ଭାସି ଯାଉ ଯାଉ ସେ ଅନେକ ଦୂରରେ କୂଳରେ ଲଗେ ଏବଂ ଜଣେ ସମ୍ଭ୍ରାନ୍ତ ବୃଦ୍ଧ ତାଙ୍କୁ ସସ୍ନେହରେ ତୋଳି ନିଅନ୍ତି। ଚିକିତ୍ସା ହୁଏ। ସେ ବଞ୍ଚିଯାଏ। ଚାକିରିରୁ ଅବସର ନେବାପରେ ସେ ଭଦ୍ରଲୋକ ସହରର ନଈକୂଳରେ ନୂତନ କୋଠା କିଣି ତା ପୂର୍ବଦିନ ହିଁ ଆସି ରହିଥାଆନ୍ତି। ତେଣୁ କେହି ଜାଣିପାରିଲେ ନାହିଁ ଯେ ସକାଳୁ ପ୍ରାତଃ ଭ୍ରମଣରେ ଯାଇ ସେ ସମାଜର ଏକ କଳଙ୍କକୁ ସାଉଁଟି ଆଣିଛନ୍ତି।

ସମସ୍ତେ ଭାବିଲେ ବନ ତାଙ୍କର ଝିଅ ।

ତା ପରବର୍ଷ ହିଁ ତାର ବାହାଘର ହୋଇଗଲା ।”

“କିନ୍ତୁ ତାର ସନ୍ତାନ କି ?” —ପ୍ରଶ୍ନ କଲେ ଚନ୍ଦ୍ରଶେଖର ।

ଆଖି ଲୁହରେ ଅନ୍ଧ ହୋଇ ଚାଲି ଯାଉ ଯାଉ ବନ କହିଲା—“ନଈରେ ଡେଇଁ ପଡ଼ିବା ଆଘାତରେ ଏବଂ ଆତ୍ମହତ୍ୟାର ଆବେଗ-ଉତ୍ତେଜନା ଭିତରେ ତାର ଗର୍ଭପାତ ହୋଇଯାଇଥିଲା ।

× × × × ×

ତା ପରଦିନ ଦେଖାଗଲା ଅଧ୍ୟାପକ ଚନ୍ଦ୍ରଶେଖରଙ୍କ ପତ୍ନୀ ନିରୁପମା ରୋଷେଇ ଘର କଡ଼ିକାଠରେ ଦଉଡ଼ି ଦେଇ ଆତ୍ମହତ୍ୟା କରିଛି । ଲେଖିଯାଇଛି ତା ମୃତ୍ୟୁ ପାଇଁ ସେ ନିଜେହିଁ ଦାୟୀ ।

ବନ ବଦଳରେ ନିରୁପମା ରୂପରେ ବଂଚ ପାରିଲାନ ।

ହତବାକ୍, ହତଭ୍ରମ ଭାବରେ ପଢ଼ାଘର ଚେୟାରରେ ବସି ରହି ଅଧ୍ୟାପକ ଭାବୁଥିଲେ । ଛଅବର୍ଷ ତଳେ ଏଇ ସହରର କଲେଜକୁ ବଦଳିହୋଇ ସେ ଆସିଥିଲେ । ଅନେକ ବର୍ଷ ପରେ ତାଙ୍କର ପୁରୁଣାବନ୍ଧୁ ସୁଦର୍ଶନକୁ ଭେଟି ଉଚ୍ଛ୍ୱସିତ ହୋଇ ନିମନ୍ତ୍ରଣ କରିଥିଲେ । ସେଇ ଦିନ ଠାରୁ ଅନେକ ଥର ସେ ଆସିଛି, ଗପିଛି, ଖାଇପିଇ ଯାଇଛି ।

ଚନ୍ଦ୍ରଶେଖର ଏତେବେଳେ ଯାଇ ଜାଣିଲେ ତାଙ୍କର ବହୁ ପୁରୁଣା ବନ୍ଧୁକୁ ଦେଖାକରିବାକୁ ନିରୁପମା କାହିଁକି ଏତେ କୁଣ୍ଠା କରୁଥିଲା,ଲୁଚି ରହୁଥିଲା,ଲାଜର ଛଳନା କରୁଥିଲା !

ଛଅବର୍ଷ ଧରି ଏଇଥିପାଇଁ ତେବେ ନିରୁପମା ସୁଦର୍ଶନର ଦର୍ଶନରୁ ନିଜକୁ ଦୂରେଇ ରଖିଥିଲା ! ବରୁଷା !!



# ଅ ଭି ବ୍ୟ କ୍ତି

ଚି
ଠି
ଖ

● ମୀନା ! ତୁମେ ସିନା ପ୍ରେମର ଧର୍ମ ନେଇ କମଲକୁ ଦେହ ଦାନ କଲ ; କିନ୍ତୁ କମଲ ଅନଙ୍ଗକୁ ପୂର୍ଣ୍ଣାଙ୍ଗ କରିପାରିଛନ୍ତି ?

● ମୋର ମନେହୁଏ; ସୃଷ୍ଟିକର୍ତ୍ତା ତୁମକୁ ଦେଇଥିଲେ ଗୋଟାଏ ଭୁଲ୍‌ସ୍ୱରେ ! ତୁମ ଜନ୍ମର କିଛି ମୂଲ୍ୟ ନାହିଁ···କିନ୍ତୁ ତୁମ ମୃତ୍ୟୁର କାରଣ ଅଛି···

● ଚନ୍ଦ୍ରଲେଖା ରଥ

ଦୀପ ଜଳେ, ମଶାଲ ବି ଜଳେ । ମଶାଲର ରଙ୍ଗୀନ୍ ହେବାର ପ୍ରସ୍ତାବ ଆଖିକୁ ତାଜୁବ୍ କରେ । ଦୀପାଳିର ରଙ୍ଗ ତା'ଠାରୁ ଭିନେ ବା ବଡ଼ ମଧ୍ୟ ନୁହେଁ । ସେହି ଶ୍ରେଷ୍ଠ ଦୀପାଳି ନିଆଁର ହୋରି ପତଙ୍ଗ ଦେଖି ଆତ୍ମହରା ହୁଏ । ସ୍ନିଗ୍ଧ ଭୂତର ଅନୁଭବ ମାଖି ହୋଇଯାଏ ତା'ର ଆଖିରେ । ହେଲେ, ସବୁ ପତଙ୍ଗ ଝାସ ଦିଅନ୍ତିନି ଦୀପାଳିରେ, ଦିଅନ୍ତି କେଇଟି ମାତ୍ର ।

ତମେ କିନ୍ତୁ ଦୀପାଳୀ ନୁହେଁ କି ମଶାଲ ନୁହେଁ । ତମେ ଖାଲି ମହମବତୀର ଦରନିଭା ବଳିତିର ଗୁଣ ନେଇ ମୋ' ସଙ୍ଗେ ଭୁଲିଥିଲ । ମହିରେ ମହିରେ ଚେତାଇ ଦେଉଥିଲ ମୁଁ ମଶାଲ, ରଙ୍ଗୀନ୍, ସୁନ୍ଦର । ତମେ କିନ୍ତୁ ମୋତେ ମଶାଲରେ ନ ଜାଳି ଜଳିବାକୁ ଦେଇଗଲ ମହମବତୀରେ । କିନ୍ତୁ ମହମବତୀରେ ଜଳିବାଟା କି କଷ୍ଟ ତୁମେ ତାହା ଜାଣି ନଜାଣିଲା ପରି ରହିଗଲ । ତମେ କେବେ ମହମବତୀର ଶିଖା ଦେଖିଛ ? ସେ ଶିଖାରେ ମନପ୍ରାଣ ଚେତନା !

ମୀନା—

ହଁ ।

ଏ ବର୍ଷକ ଭିତର ଭିଜିଲା ଦେହପରେ ମୁଁ କ'ଣ ତୁମଠାରୁ ଏଇଆ ଭାବିଥିଲି ? ମୁଁ ଜାଣେ ତୁମେ ଚାହଁ ନା ମାତ୍ର ମୋ ବିକ୍ଷିପ୍ତ ମନଟାକୁ ସଂଯତ କରିବାକୁ ମୋର ଏକ ପ୍ରଚେଷ୍ଟା ।

ମୀନା ! ଗୋଟେ କଥା ପଚାରିବି କିଛି ଭାବିବନି ।

ଭାବିବାର କିଛି ପ୍ରଶ୍ନ ନାହିଁ ଅଜିତ୍ !

ତମର ବାହାଘର କାର୍ଡ଼ଟା ପାଇ ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା ଲୀନା । ସେଇଥିପାଇଁ ଆଜି ମୋର ଏ ଅଭିସାର ।

ହଁ ମୋର ବାହାଘର ଅଜିତ୍ । ମୁଁ କ'ଣ ଆଉ ବାହା ହୁଅନ୍ତିନି ? ତୁମେ ଭାବିଥିଲ ମୋ' ଆକୁମାରୀ ଜୀବନଟାକୁ ଆହୁରି ବୋଧେ ଜାଳିଥାନ୍ତି ।

ଜାଳିବାର ଆଶାଥିଲେ ଆଜି ମୁଁ କ'ଣ ଆସିଥାନ୍ତି ଲୀନା ? ଆଜି ଯଦି ବର୍ଷକ ସ୍ଥିତି ହୋଇ ନଥାନ୍ତା ତେବେ ତୁମ ଆସିବାଟା ସ୍ୱପ୍ନ । ତୁମେ ବର୍ଷକ ସ୍ଥିତିର ଖାଲି ମାଦକତା ନେଇ ଆସିଛ । ଆଃ, ତୁମର ସେ ଠକାମି ମନଟାରେ ଆହୁରି ବି ପ୍ରଚେଷ୍ଟା । ଆଶ୍ଚର୍ଯ୍ୟ ଲାଗେ ଅଜିତ୍ । କେବେ ଦିନେ ତୁମ ସହ ମିଛ ପ୍ରେମର କଉଡ଼ି ଖେଳିଥିଲି କିନ୍ତୁ ଏବେ ବଉଳପାଟ ପିନ୍ଧି ହୋମଲହ୍ୱାରେ ଲଇଁ ଲଇଁ କମଲ ସହ କଉଡ଼ି ଖେଳିବି ।

କମଲ ???

ହଁ, କମଲ ଅଜିତ୍ । ସେଇ ଆଭିଜାତ୍ୟହୀନ, ନୈତିକତାହୀନ କମଲ । ଯାହାକୁ ତୁମେ କୁତ୍ସାରଟନାରେ କବର ଦେଇଥିଲ । ଯାହାପାଇଁ ତୁମେ ଆୟୋଜନ କରିଥିଲ ଗୁଳି, ଗୁଳା, ବାରୁଦ । ଯାହାକୁ ତୁମେ ସମାଜରୁ ନିକାଲି ଦେବାକୁ ବସିଥିଲ । ଆଜି ତା'ର ସ୍ଥିତି କେଉଁଠି ଜାଣ ? ସମୟ ଆସିବ, ସେ ତୁମର ପରି ସନ୍ଦିଗ୍ଧ ଲୋକଙ୍କୁ ସମାଜରୁ ନିକାଲି ଦେବେ । କିନ୍ତୁ ସେ ତା କରିବେନି ମୁଁ ଜାଣେ । ମୁଁ ବି କରେଇ ଦେବିନି । ଅଙ୍ଗାରର କଳା ତାକୁ ଆହୁରି ଆହୁରି ଧୋଇ ଲାଭ କ'ଣ ?

ତୁମେ ତାହାହେଲେ ଆଜି କମଲକୁ ପ୍ରେମ କରି ବାହା ହେଉଛ ! ତା'ହେଲେ ମୋତେ ତୁମ ମାଙ୍ଗଳିକ କାର୍ଡ଼ଟା ଦେବାର ମାନେ ???

ତୁମର ସେଇ ଠକାମି ମନଟାରେ ଆଉ ଟିକିଏ ମନେପକାଇ ଦେବାକୁ ଯେ, କମଲ ପ୍ରେମ ଜାଣେ । ମୁଁ ଯଦି ତା'ଙ୍କୁ ବାହା ନ ହେବି ତେବେ ସେ ଚିରଦିନ ଆକୁମାରୀ ରହିବେ । ତମେ କ'ଣ ପାରିଲ ??

ସତରେ ଲୀନା ! ତୁମକୁ ବୁଝିବାକୁ ବହୁତ ସମୟ ଅଛି । ଭୁଲ୍ କେବଳ ଜଣକର ନୁହେଁ । ପିଲଟା ଜନ୍ମ ନିଏ କ'ଣ କେବଳ ନାରୀ ଯୋଗୁ । ବର୍ତ୍ତମାନ ତୁମେ ଉତ୍ତପ୍ତ । ସଂଯତ ହୋଇପାରିନ ।

ତୁମେ କଳାତ୍ମକ ଭାସ୍କର ଶଙ୍ଖମଲ ପଥରର କଳା ନୁହେଁ । ଯାହା ଭାବି ମୁଁ ଧାଇଁଥିଲି ତୁମ ପଛରେ । ତୁମେ ସିନା ପ୍ରତିବାଦ କରି ମୋ ଠାରୁ ପଳାୟନ-ପନ୍ଥି କିନ୍ତୁ ମୁଁ ନୁହେଁ । ମୁଁ ଚାଲିଛି ଶାଶ୍ୱତ ପ୍ରେମର ଚଲା ପଥରେ ।

ଏମିତି ପ୍ରେମ ଆମ ଆଗରୁ ଅନେକଙ୍କର ଘଟିଛି; ଆଜି ବି ଘଟୁଛି, ପୁଣି ଯେ କେତେଲୋକଙ୍କର ଘଟିବ ଭାବିବା କିଛି ନୂଆ ନୁହେଁ । ତେବେ ପହିଲି ପ୍ରେମର ଦାଗଟା ସହଜେ ଲିଭେନି । କମିତି ବା ଲିଭନ୍ତା ?

ସତ କହିଲେ ବୋଧେ କିଛି ଭୁଲ ହେବନି ଲୀନା ! ଆଜି ତୁମ ବିଶ୍ୱାସ-ଘାତକତାର ନିଚ୍ଚର ପରିଚୟ ପାଇଲି । ନାରୀ ପୁଣି ବିଶ୍ୱାସଘାତିନୀ ହୋଇପାରେ ?

କିନ୍ତୁ ତୁମର ମନେରଖିବା ଉଚିତ୍ ଥିଲା ! ଯଦି ପ୍ରତାରଣା କରି ନ ଆନ୍ତ ତେବେ ପ୍ରତାରିତ ହୋଇ ନ ଥାନ୍ତ ।

ବଞ୍ଚିରହିବାର ବାସନା ଥିଲା, ସ୍ଥିତିକୁ ବଜାୟ ରଖିବାକୁ କ୍ଷୁଧା ଥିଲା, ସେଥିପାଇଁ ମନ ଗୁମୁରି ଥିଲା ମନଟିଏ । ଆବାଜ୍ ଦେଲି । ଜବାବ ପାଇଲିନି ସତେ ତୁମେ କେଡ଼େ ନିଷ୍ଠୁର !

ତୁମ ଜୀବନଟା ସଂପୂର୍ଣ୍ଣ ଏକ ଜୀବନ ନୁହେଁ, ପ୍ରଶ୍ନବାଚୀ । ସେଇ ପ୍ରଶ୍ନକୁଣ୍ଡଳୀ ଭିତରେ ତୁମେ ଏକ ଇନ୍ଦ୍ରଧନୁ । ତୁମର ରଙ୍ଗ ନାହିଁ, ରୂପ ଅଛି । ସେଇ ରୂପରୁ ଖଣ୍ଡେ ଦେଖାଇ ଦେଇ କ୍ଷଣି ପାଇଁ ତୁମେ ମୋ' ମନରେ କ୍ଷଣିକ ବ୍ୟାକୁଳତା ପ୍ରକାଶ କଲ । ଇନ୍ଦ୍ରଧନୁର ସଉନ୍ଦର୍ଯ୍ୟପାଇଁ ସମସ୍ତଙ୍କ ଆଖିରେ ମାଛି ହୋଇଯାଏ । ତା'ର ଧର୍ମ ସେଇଆ। ମାତ୍ର ତୁମେ ? ତୁମେ ଇନ୍ଦ୍ରଧନୁ ନୁହଁ । କାରଣ ତୁମର ବୈଚିତ୍ର୍ୟ ନାହିଁ । ନୈତିକ ବିକାଶ ତୁମଠି ନାହିଁ । ତୁମେ ସ୍ୱୀକୃତ ନୁହେଁ, ବିକୃତ ।

ତୁମେ ବୋଧହୁଏ ଇନ୍ଦ୍ରଧନୁ ଦେଖିନ । ଦେଖିବାର ଶକ୍ତି ବି ତୁମର ନାହିଁ, ହଜିଯାଇଛି, ମରିଯାଇଛି ସେ ଶକ୍ତି ।

ଲୀନା ! ଆଉରି ଅଛି କହିବାକୁ ? କହିଯାଅ, ମନଖୋଲି କହିଯାଅ । ତୁମ ପ୍ରେମିକ ଆଜି ଶୁଣିବାକୁ ପ୍ରସ୍ତୁତ ଅଛି, ଧୈର୍ଯ୍ୟଅଛି, କ୍ରୋଧ ନାହିଁ । ମୁହଁରେ ଭାଷାଶୂନ୍ୟ ହେଲେ ଆଖିକୁ ଲୁହ ଆସେନା ।

ଆଉରି ଶୁଣିବ ? ତୁମେ କେବଳ ଏକ ନିଷ୍ଠୁର ନୀରବ ଝଡ଼ । ତୁମର ଅଳସ ହାତରେ ତୁମେ ଉଡ଼େଇ ଦେଇପାର କୁଆଁରୀ ଜୀବନର କୁଢ଼ କୁଢ଼ ଯୌବନ ସେଇ ଯୌବନ ଉପରେ ହାତରଖି ବେଳେ ବେଳେ ଜାଣିନିଅ ଉଷ୍ମ ଅଛି କି ନାହିଁ, ଉଷ୍ମ ନ ଥିଲେ ତୁମେ ତାକୁ ଓଲଟ ପକାଇ ଚାଲିଯାଅ । ଏମିତି କେତେ ଯେ କୁଆଁରୀ ଜୀବନ ଖୋଲେଇ ଖୋଲେଇ ଦେଖିଥିବ ହେଲେ ଭାବି ପାରନି ସେ ଓଲଟ ଯୌବନର ଟିକି ଟିକି ଯୌବନ କେତେ ବେଦନାତୁର !

ମୋତେ କାହିଁକି ଆଜି ହତାଶରେ ଜାଳୁଛ ? ତମେ କ'ଣ ମୋତେ ଏବେ ଭଲ ପାଅନି ? ନାରୀର ଧର୍ମ କ'ଣ ଏଇଆ !

ଭଲ ପାଇବାର କୌଣସି ନୀତି ନିୟମ ନାହିଁ ଅଜିତ୍, ସେ ନ୍ୟାୟ ଓ ନୈତିକତା ଦୃଷ୍ଟିରୁ ମୁଁ ମୋ ଭଲପାଇବାକୁ କେବେ ବିଗ୍ଭର କରିନି । ଯେଉଁ ପ୍ରେମରେ ସନ୍ଧି ଥାଏ, ସେ ପ୍ରେମରେ ଆନ୍ତରିକତା ଥାଏ ବୋଲି ମୋର ବିଶ୍ୱାସ ହୁଏନି । ସେଇଥିପାଇଁ ତୁମ ପ୍ରଣୟକୁ ମୁଁ ଅତି ନିଷ୍ଠୁର ଭାବେ ତ୍ୟାଗ କରିଛି ।

ତୁମ ପ୍ରେମକୁ ପ୍ରତ୍ୟାଖ୍ୟାନ କଲାପରେ ତମେ ଆଉ ବେଶୀ ମନେ ପଡ଼ନ୍ତ ! ସେ ବି ଗୋଟାଏ ସୁଯୋଗ । ନା, ନା ମୋର ସୁଯୋଗ ମୁଁ ନିଜେ । ତଥାପି ମୁଁ ନିଜ ପ୍ରତି ମୋର ଆସ୍ଥା ହରେଇନି । ଅଦିନିଆ ମେଘର ଅସରାରେ ଭିଜିବାକୁ ସାଥୀ ଖୋଜୁନି । ପବନର ପ୍ରକୋପ ବଢ଼ିଲେ ବି ମନଟା ଶାନ୍ତ । ମୁଁ ଆଜି ଶାନ୍ତି ପାଇଛି କେବଳ ତୁମକୁ ଆଡ଼େଇ ଦେଇ ।

ତୁମ "ମାନସୀ" ଡାକଟା ମୋତେ ଆଉ ଭଲଲାଗେନି । ସେ ନାଁଟା ତୁମ ମନର ବୋକାମୀ । ତୁମେ ଡାକିଲେ ମୁଁ ଆଉଟିକିଏ ଘୁରେଇତୁରେଇ ହୋଇ ଗୁହିଁବି ତା' ନୁହେଁ । ତୁମ ଡାକରେ ମୋର ଆଉ ବିଶ୍ୱାସ ନାହିଁ । ମୋର ବିଶ୍ୱାସ ମୁଁ ନିଜେ ।

ଆଜି ତୁମ ଅଭିନୟଟା ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି 'ଲୀନା' !

ନ ଲାଗିବ କିପରି ଅଜିତ୍ ! ଅଭିନୟ ତୁମ ସଙ୍ଗେ କରି ନ ଥିଲି; ଅନେକ ରଙ୍ଗମଞ୍ଚରେ ଦେହଟାକୁ ରଙ୍ଗିନ୍ କରି ଅଭିନୟ କରିଛି । କିନ୍ତୁ ତୁମପରି ନିଜକୁ ଠକି ଅନ୍ୟ ଜଣକୁ ଠକେଇବା ମୋ ଜୀବନରେ ନାହିଁ ।

ବରଫିଆ ଆକାଶର ରଙ୍ଗୀନ୍ ସୂର୍ଯ୍ୟକିରଣ ଭଳିଆ ମୁଁ ନୁହେଁ । ମୁଁ ଗୋଟିଏ ବ୍ୟଥିତ ଆତ୍ମା ଥିଲି । ସେଇ ବ୍ୟଥିତ ଆତ୍ମାଟାକୁ ତୁମେ ଶାନ୍ତ କରିବ କ'ଣ ବରଂ ଆହୁରି ହୁତାଶରେ ଜାଳିଦେଲ । ଏଇ କ'ଣ ମୋର ପ୍ରାପ୍ୟ ? ଏ ଜଗିକଲୁଷ୍ଟ ସମାଜରେ ତମେ କୁଆଡ଼େ ସତ୍ୟବାନ ପୁରୁଷ ! ଆଃ, ଖୁବ୍ ହସ ଲାଗେ । ସତ୍ୟବାନ ପୁରୁଷର ଏଇ ଧର୍ମ !

ଧର୍ମ କ'ଣ ଲୀନା ? ଧର୍ମ କିଛି ନାହିଁ । ସେ କେବଳ ଗୋଟାଏ ଫମ୍ପା ଶବ୍ଦ । ନାରୀର ଧର୍ମ ଥିଲେ ଆଜି ମୋତେ ତୁମେ ଏମିତି ଜାଳୁଆନ୍ତ । ଆଜି ତୁମର ଆଉ ମନେ ପଡ଼ୁନି ଆମ ସମ୍ପର୍କ ।

ସମ୍ପର୍କ ? ତୁମର ମୋର ଖାଲି ଗୋଟାଏ କମ୍ପାର୍ଟମେଣ୍ଟାଲର ସମ୍ପର୍କ । ତମେ ମୋର କାହିଁକି ମନେପଡ଼ିବ ଅଜିତ୍ ? ତମେ ମୋର କିଏ ? ତମେ ମୋର କେହି ନୁହେଁ । ତମେ କ'ଣ ପୁରୁଷ ? ତୁମ ପାଖେ ପୌରୁଷତ୍ୱ ଅଛି ?

ଆଦର୍ଶ, ନୀତି, ତ୍ୟାଗ ତୁମପାଇଁ ବଡ଼ ହୋଇପାରେ । ନାରୀ ପାଇଁ ବଡ଼ ହେଉଛି ପୁରୁଷର ଦେହ । ସେ ନାରୀ ରୂପର କୁମାରପୂର୍ଣ୍ଣିମା ହେଉ ବା ବିକଳାଙ୍ଗ ଯୌବନ ହେଉ । ଶୀଘ୍ର ବଦଳିଯିବା ନାରୀର ଧର୍ମ । ସେଇ ଅଦଳ ବଦଳକୁ ଗମ୍ଭୀରଭାବେ ଲକ୍ଷ୍ୟକରି ସେଇ ଅନୁସାରେ ନିଜକୁ ପ୍ରସ୍ତୁତ କରିବା ପୁରୁଷର କର୍ତ୍ତବ୍ୟ ହେବା ଉଚିତ୍ ।

ହାଃ, ହାଃ, ହାଃ ସେଇଥିପାଇଁ ତୁମେ ତା'ହେଲେ କମଲକୁ ଦେହ ଦେଇଛ ଲୀନା ।

ତୁମେ ଜାଣ ଅଜନ୍ତ୍ ଦେହ ବିନା ପ୍ରେମ ଅସମ୍ଭବ । ଯାହାକୁ ତୁମେ ସ୍ୱର୍ଗୀୟ ପ୍ରେମ କୁହ, ମୁଁ ତାକୁ ଘୃଣା କରେ । ସ୍ୱର୍ଗୀୟ ପଦ ତୁମ ମନର ବୋକାମୀ ଛଡ଼ା ଆଉ କିଛି ନୁହେଁ ।

ହିସାବ କିତାବ କରି ପ୍ରେମ କରିହୁଏନା । ହିସାବ କିତାବ କରି ପ୍ରେମ କରୁଥିଲେ ହିସ, କାହାର କୁଆର ଉଠନ୍ତାନି ବା ମୋ' ପରି ଅନେକ ନାରୀ କାମନାରେ ଜଳି ଜଳି ନିକ୍ଷେପିତ ହୁଅନ୍ତେନି ।

ମୋ କଥାରେ ଅବିଶ୍ୱାସ ଆଇପାରେ, ମାତ୍ର ଏଇ ଦେଖ ନାଲିଫୁଲର କପର ହିଲ୍ଲୋଳ । ଝରକାଗ୍ରୀଲର ପୋର୍ଟିକରେ ଭରି ନାଲିଫୁଲ, ଆକାଶରେ ଗୃଧର ହିଯର-କୁଆର ଏବେ ସବୁ ଦେଖୁଛି । ଦେଖିବାକୁ ଖୁବ ଭଲ ଲାଗୁଛି ।

ଏଇ ପୋର୍ଟିକ ପାଖରେ ଆମେ ଅନେକ ବସିଛେ । କିନ୍ତୁ ଏଇ ନାଲିଫୁଲ ଦେଖିବାରେ ଯେଉଁ ସୁଖ ସେତେବେଳେ ନଥିଲା, ଏବେ ମନେହୁଏ; ଏ ନାଲିଫୁଲ ତୁମ ପ୍ରେମକୁ ମଧ୍ୟ ଅସ୍ୱୀକାର କରେ । ତୁମେ ଥିଲେ ହୁଏତ ନାଲିଫୁଲ ତା'ର ପାଖୁଡ଼ା ମେଲିନଥାନ୍ତା, ଗୃଧ ହେଉଣୁ ହିସ ହସିନଥାନ୍ତା । ତୁମକୁ ପ୍ରତ୍ୟାଖ୍ୟାନ କଲା ପରେ ମୁଁ ଦେଖୁଛି ସାମ୍ନାରେ ଯେଉଁ ଚମ୍ପାଗଛଟା ତା' ଦେହରେ କଢ଼ିର ଗାଲିଚା । ଆଃ, କି ସୁନ୍ଦର !

ଏବେ କମଳ ଏଇ ଚମ୍ପା ଗଛମୂଳକୁ ଆସନ୍ତି, କେବଳ ମୋ' ଲାଗି । ବଗିଚା ସାରା ଘୂରି ବୁଲନ୍ତି । ଚମ୍ପାଗଛର ସବୁଜ ଶାଖା ଭିତରୁ ମୁଁ ତାଙ୍କୁ ଟିକିଏ ଦେଖିନିଏ, ସେ ବି ବାଦ୍ ଯାଆନ୍ତିନି । ସେ ବଗିଚାର ପ୍ରତିଟି ଗଛ ଆମ ପ୍ରେମ ଜାଣନ୍ତି । ଯେତେବେଳେ ସୂର୍ଯ୍ୟଙ୍କ ଅସ୍ତ ଲାଲକିରଣ ପ୍ରତ୍ୟେକ ଗଛରେ ଖେଳିଯାଏ, କମଳ ଚାଲିଯାଏ ବଗିଚାରୁ, ସେତେବେଳେ ପ୍ରତ୍ୟେକ ଗଛର ପତ୍ରଗୁଡ଼ିକ ଝାଉଁଳି ପଡ଼ନ୍ତି । ମନେହୁଏ, କମଳ ବିନା ମୋ ଜୀବନଟା ଯେପରି ଅସମ୍ଭବ ସେପରି ଏ ପ୍ରତ୍ୟେକ ଗଛ ମଧ୍ୟ କମଳକୁ ପ୍ରେମ କରନ୍ତି ।

ନୀନା ! ତୁମେ ସିନା ପ୍ରେମର ଧର୍ମ ନେଇ କମଳକୁ ଦେହଦାନ କଲ, କିନ୍ତୁ କମଳ ଅନଙ୍ଗଙ୍କୁ ପୂର୍ଣ୍ଣାଙ୍ଗ କରିପାରିଛନ୍ତି ?

ହଁ ଅଜନ୍ତ୍ । ଅଙ୍ଗର ସାନ୍ନିଧ୍ୟରେ ଯେଉଁ କାମଲିପ୍ସା............

ଦେଖ ଦେଖ, କାମ ପ୍ରବୃତ୍ତିର କି ଚରମତମ ସୃଷ୍ଟି । ଲାସ୍ୟମୟୀ ନାରୀର କି ଶିହରଣ ! ଏଇ ଛବି ମୁଁ ଆଙ୍କୁଛି । କମଳ ଛବିରେ ରଙ୍ଗ ଦେଉଛନ୍ତି । ତାଙ୍କ ରଙ୍ଗୀନ୍ ହାତଟା କି ସୁନ୍ଦର ।

ତୁମେ ଦିନେ କିନ୍ତୁ ବଡ଼ ଆଶା, ବଡ଼ ମନନେଇ କହିଥିଲ, "ନୀନା ? ସବୁଦିନେ ମୁଁ ତୁମର ହୋଇ ରହିବ । ତୁମର ମଡ଼େଲ୍ ମୁଁ । ତୁମେ ଛବି ଆଙ୍କିବ, ମୁଁ ରଙ୍ଗ ଦେବ ।" ତମେ ଆଜି କିନ୍ତୁ ହାରିଯାଇଛ । ଏହି ହାର-ଜିତ୍ ଦୁନିଆ ଭିତରେ କମଳହିଁ ଜିତିଛି ।

ସତକଥା ଲୀନା ; ମଣିଷ ଯା'ଭାବେ ତା କରିପାରେନି, ଯାହା ହେବାର ଥାଏ ତାହା କେବଳ ଘଟିଯାଏ । ପ୍ରେମ ସଙ୍ଗେ-କାମଲିପ୍‌ସା ଜଡ଼ିତ ଥିଲାପରି ମୋର ମନେହୁଏନି ।

ହୁଁ ? ତମେ କଣ ପୁରୁଷ ? ତମ ପାଖେ ପୌରୁଷତ୍ୱ ନାହିଁ । ତୁମେ ପୁରୁଷ ହୋଇ ନାରୀକୁ କପଟ ଖେଳେଇ ଜାଣ, ସେଥିରେ ତୁମେ ପାରଙ୍ଗମ । ପ୍ରଥମ ବସନ୍ତ ଝଙ୍କାରରେ ପ୍ରେମର ସମ୍ବୋଧନ ତମକୁ ମନେହେଲା ଉଦାସୀ ଝଡ଼ । ତମେ କେବେ ପ୍ରେମକରି ଶିଖିଥିଲ ? ଏମିତି ଖଣ୍ଡେ, ଅଧେ ଚିଠି ଦେଇଥିଲେ ସେଇଟା ପ୍ରେମ ହୁଏନି । ପ୍ରେମ ଏକ ବିରାଟ ବସ୍ତୁ । ତା'କୁ ହାତରେ ଦେଖି ହେବନି' ଦୂରରୁ ଦେଖିଲେ ଖୁବ୍ ସୁନ୍ଦର ଦେଖାଯିବ ।

ବନେ କିନ୍ତୁ ଭାବିଥିଲି ତୁମକୁ ଲେଡ଼ିଗୁଇଡ଼ରିର ଲଭର କରିବି । ତମେ କିନ୍ତୁ ତା' ହୋଇ ପାରିଲନି । କମଲ ହୋଇପାରିବେ । ତାଙ୍କର ବିବେକ ଅଛି, ଆତ୍ମୀୟତା ଅଛି ଆଉ ସବୁଠାରୁ ବଡ଼କଥା ନିଷ୍ପ ପ୍ରେମ ।

ସତକଥା କହିବାକୁ ଆଜି ମୁଁ ବାଧ୍ୟ । କିନ୍ତୁ ସତ୍ୟଟା ବଡ଼ ନିଷ୍ଠୁର । ଆମ ମନଭିତରେ ଏକତ୍ୱର ସ୍ୱର ବିଭିନ୍ନ ସମ୍ପର୍କ ନେଇ ଗଢ଼ିଉଠେ ଓ ପରେ ନିଜସ୍ୱ ସ୍ୱଭାବ, ଧର୍ମ ନେଇ ଆମେ ନିଷ୍ଠୁରଭାବେ ଆଘାତ ପାଉ । ମୁଁ ତାହା ତମଠୁ ଶିଖିଛି । ତମେ ବୋଧେ ମୋତେ ଶିଖାଇବାକୁ ଆସିଥିଲ । ଭଲହେଲା, ନହେଲେ ଜୀବନରେ ମୁଁ ଆହୁରି ଧୋକ୍‌କା ପାଇଥାନ୍ତି ।

ଏକାକୀତ୍ୱର ଦାୟିତ୍ୱ ବହନ କରିବାକୁ ଅସମର୍ଥ ହୋଇ ମଣିଷ ଗଢ଼େ ସମାଜ, ପରିବାର । ସେଥିପାଇଁ ମୁଁ ତୁମକୁ ଲୋଡ଼ି ବସିଥିଲି ଆଉ ତୁମେ ବି ମୋତେ । ଆଜି ପରସ୍ପର ଉପରେ କିଛି ଅଧିକାର ନାହିଁ, ସମ୍ବନ୍ଧ ନାହିଁ ଆମେ ସବୁ ପୃଥକ । ତମେ ଅସ୍ୱୀକାର କରିପାର ଅଜିତ୍ ।

ନା' ଲୀନା ଅସ୍ୱୀକାର କରିବାର କିଛି କାରଣ ନାହିଁ । ହେଲେ ଦାନ ଦେଇ ପ୍ରତିଦାନର ଆଶା ।

ପ୍ରତିଦାନ ? ମୋ' ଠାରୁ ପାଇବା ପ୍ରତିଦାନ ସବୁଠାରୁ ବୋକାମୀ । ଏପରିକି ନିଜ ମା' ଠାରୁ ପାଇବା ମଧ୍ୟ ଅସମ୍ଭବ । ମା ବାଧ୍ୟ ନୁହେଁ ପ୍ରତିଦାନ ଦେବାକୁ । ସେ ସୃଷ୍ଟିର ଏକ ପୁତ୍ତଳିକା ।

ମା' ଠାରୁ ଜନ୍ମ ନେଇ ଅଜି ପୁଣି ମା' ପ୍ରତି ଭର୍ତ୍ସନା । ଏଇ ତୁମର ନୈତିକତା, ଧର୍ମ—ଲୀନା !

ଅଜିତ୍ । ତୁମେ ପରି ଧର୍ମ, ଆଗ୍ରର ନୈତିକତାର ପରସ୍ତ ପରସ୍ତ ଦଉଡ଼ିରେ ତୁମେ ମୋ' ବିବେକକୁ ହତ୍ୟା କରିବାକୁ ଚେଷ୍ଟା କରୁଛ । ଅନେକ ବର୍ଷ ଧରି ମୋତେ ଯନ୍ତ୍ରଣାରେ ନିକ୍ଷେପିତ କରି ମୋ ଶୃଙ୍ଖଳିତ ଜୀବନକୁ ପଙ୍ଗୁ କରିବାକୁ ଚେଷ୍ଟା କରିଥିଲ । ହେଲେ କଣ, ପାରିଲ ? ତୁମର ମାୟାଜାଲରେ ଆଜ୍ଛନ୍ନ

ହୋଇ ତୁମର ଗୋପନ ଦୁର୍ବଳତା ସବୁ ଜାଣି ପାରୁଛ । ଆଉ ପୁଣି ବର୍ଷ କ ପରେ ଏ ଅପଚେଷ୍ଟା କାହିଁକି ?

ମୋର ମନେହୁଏ ; ସୃଷ୍ଟିକର୍ତ୍ତା ତୁମକୁ ଜନ୍ମ ଦେଇଥିଲେ ଗୋଟିଏ ଖିନ୍‌ପରେ । ତୁମ ଜନ୍ମର କିଛି ମୂଲ୍ୟ ନାହିଁ , ଅର୍ଥ ନାହିଁ । କିନ୍ତୁ ତୁମ ମୃତ୍ୟୁର କାରଣ ଅଛି, ମୂଲ୍ୟ ଅଛି ।

ଓଃ ! ଆଜି ତୁମେ ଜାଣିଶୁଣି ମୋ ଉପରେ ପ୍ରତିଶୋଧ ନେଉଛ ମିନା । ସୃଷ୍ଟିକର୍ତ୍ତା କେବେ ସହିବେନି । ବେଳ ପଡ଼ିଲେ ତୁମକୁ ସେ ଯନ୍ତ୍ରଣାରେ କଲବଲ କରି ମାରଦେବ । ସେତେବେଳେ ତୁମେ ଭଗବାନଙ୍କୁ ହାତବଢ଼ାଇଲେ ବି ଯାହା ମିଳିବନି । କାହିଁକି ଏ ଅଯଥା ପ୍ରତିଶୋଧ ମୋ' ଉପରେ ?

ପ୍ରତିଶୋଧ ନ ନେବ ବୋଲି ତୁମେ ଭାବୁଛ କାହିଁକି ? ତମେ ଯେତେବେଳେ ମୋତେ ହତାଶରେ ଜାଳଦେଇ ଆଉ ଗୋଟିଏ ସ୍ତ୍ରୀ ସହ ବାସର-ରାତି ଶପଥ କରୁଛ, ସେ ପ୍ରତିହିଂସାର ବହ୍ନି କାହାପାଇଁ ? ତା'ପରେ ସ୍ଥିର କଲି, ସମାଜରେ ବୋଧହୁଏ ମୋ' ପ୍ରେମର ସ୍ଥାନ ନାହିଁ , ପ୍ରାଣରେ ମୋର ପ୍ରେମ ସ୍ଥାନ ହେଲା ଶୂନ୍ୟ, ସେଇ ସ୍ଥାନରେ ରୂପପୂଜାରୀଙ୍କ ଜ୍ୱାଳା ଯେନି ସଂକଳ୍ପ କଲି, ପ୍ରତ୍ୟେକ ପୁରୁଷ ଜାତିରେ ଆଣିଦେବ ପ୍ରେମର ବ୍ୟର୍ଥତା, ଜୀବନ ଖାତରେ ଶୂନ୍ୟତା ।

ପ୍ରତିଦାନ ଦେଇଛି—ତରୁଣ ଫେରୁଛି ନୈତିକତା ଜୀବନରେ ବ୍ୟର୍ଥତାର ଅଭିଶାପ ଘେନି,ଅସଂଯତ ସମ୍ଭୋଗର ଢକ୍କତା ଘେନି, ପ୍ରୌଢ଼ ଫେରୁଛି ନଷ୍ଟଲତାର ହାହାକାର ଘେନି ।

...ତା'ପରେ ମନରେ ପୁଣି ଆଲୋଡ଼ନ । ଆଖିରେ ଇନ୍ଦ୍ରଜାଲର ସୃଷ୍ଟି ହେଲା । ନିରାଶା ଶୂନ୍ୟତା ଘେନି କମଳ ଫେରିପାରିଲେନି ।

କିନ୍ତୁ ମିନା ! ଏ କ୍ରୂର ଅଭିଶାପ ନିଜକୁ କାହିଁକି ଦେଲ ? ସ୍ୱେ ପ୍ରତିଶୋଧରୁ କଣ ପାଇଲ ?

କିଛି ପାଇବା ପାଇଁ ପ୍ରତିଶୋଧ ନେଇ ନଥିଲି ଅଜିତ୍ । ମୁଁ ନେଉଥିଲି ସମଗ୍ର ପୁରୁଷଜାତିର ସ୍ୱାର୍ଥପରତା, ଦୁର୍ବଳତା । ନବୁଝିଲା ପର୍ଯ୍ୟନ୍ତ ତୁମ ଗୋଲ ପାଣିରେ ମୁଁ ଉବେଇ ଡୁବେଇ ହେଉଥିଲି । କିନ୍ତୁ ବୁଝିଗଲି ସତେ ତୁମେ କି ମଣିଷ ।

ବହୁତ କଷ୍ଟରେ ବୁଝିଲି ତୁମ ମନ ଅତି ବଡ଼ନ, ସେଠାରେ ଶୂନ୍ୟତାର ସ୍ଥାନ ନାହିଁ ।



# ଅନ୍ତଃସ୍ୱର

ଶ୍ରୀ ସୁବାସ ମହନ୍ତାବ

ମିସ୍ ଉଷାକୋ ହାସେଗାଓ୍ୱା !

ତୁମର ପ୍ରାଣସ୍ପର୍ଶୀ ହସ୍ତାକ୍ଷର ଦେଖି ମୁଁ ସେଦିନ ଆଶ୍ଚର୍ଯ୍ୟ ହେଲି । ଟୋକିଓର ବିଶାଳ ନଭଶ୍ଚୁମ୍ବୀ ପ୍ରାଚୀରର ଗହ୍ୱର ଭିତରୁ ମୋ' ପାଖକୁ ଅଥଚ ମୋର ଠିକଣା ନଜାଣି (ମୋର ବିଶ୍ୱାସ) ତୁମ ଚିଠି ପାଇ ଯେତିକି ଦୁଃଖ ଆଉ ଅନୁଶୋଚନାରେ ମ୍ରିୟମାଣ ହେଉଥିଲି ତାଠାରୁ ଅଧିକ ଆଶ୍ଚର୍ଯ୍ୟାନ୍ୱିତ ହେଉଥିଲି ।

ଉଷାକେ ! ତୁମକୁ ମୁଁ ଜାଣିଥିଲି ପ୍ରଥମେ ନାଗୋୟା ସିଟିର ଗୋଟିଏ ପାର୍ଟିରେ । ସେଦିନ ସାମ୍ବାଦିକ ଜୀବନର ପ୍ରଥମ ଅନୁଭୂତିକୁ ଉପଲବ୍ଧି କରିବା ପାଇଁ ଆମ ପ୍ରେସ ଅଫିସରୁ ମୋତେହିଁ ପାର୍ଟିକୁ ଯିବାକୁ ବନ୍ଧୁମାନେ ଅନୁରୋଧ କରିଥିଲେ । ଆଉ ସେଦିନ ମଦ ମାଂସର ଲୋଭକୁ ସମ୍ଭାଳିବାକୁ ଯାଇ ମୁଁ କରିଡ଼ର ତଳେ ଠିଆ ହୋଇ ସିଗାରେଟରେ ଅଗ୍ନି ସଂଯୋଗ କରୁଥିଲାବେଳେ ତୁମେ ମୋ ଆଡ଼କୁ ଟିକିଏ ଆଗେଇ ଆସି ତୁମର ପାର୍ଟିରେ ରହିବାକୁ ଅନିଚ୍ଛା ପ୍ରକାଶ କରି ମୋତେ ଅନୁରୋଧ କରିଥିଲ ତୁମ କାରରେ କୌଣସି ପାର୍କରେ କିଛି ସମୟ କଟାଇବାକୁ । ମୁଁ ନିହାତି ଅସହାୟ ଭାବି ଆଉ ନିଜକୁ ସେଠାରୁ ଫିଙ୍ଗି ହୋଇ ଚାଲିଯିବାର ଉଦ୍ୟମ କଲାବେଳେ, ତୁମେ ଠିକ୍ ଭାବେ ତୁମର ଅନୁରୋଧ ଉପସ୍ଥାପନ କରିଥିଲ । ତାପରେ ମୁଁ ଜାଣେନି, ତୁମ ସହ କାହିଁକି କେଜାଣି ଅସମ୍ଭବ ଭାବେ ମୋ ମନରେ ମମତା ଆସିଲା ଆଉ ସେଥିପାଇଁ ସୁଦୂର ଟୋକିଓରୁ ନାଗୋୟାକୁ ମୁଁ ବହୁବାର ଆସିଛି । ତୁମ ଡାଡ଼ି ଯେ କି କୌଣସି ଗୋଟିଏ ଉଡ଼ାଜାହାଜ କମ୍ପାନୀର ବଡ ଅଫିସର । ତାଙ୍କର ମୋ ଉପରେ ଅଯଥା ସ୍ନେହକୁ ମୁଁ ବେଶି ଉପଲବ୍ଧି କରିପାରୁଥିଲି । ସତେ ଉଷାକୋ, ତୁମ ଡାଡ଼ି କାହିଁକି ମୋପରି ଜଣେ ଜର୍ନାଲିଷ୍ଟକୁ ଭଲ ପାଉଥିଲେ ମୁଁ ଜାଣେନି—ସେଥିପାଇଁ ମୋ ମନରେ ଖୁବ ଦୟା ହେଉଥିଲା ।

ଉଷାକୋ, ତୁମେ ନିଗିହା । ତୁମେ ସଂମ୍ଭ୍ରାନ୍ତ ବଂଶରେ ଜନ୍ମ ନେଇଛ— ତୁମର କି କିଛି ଅଭାବ ନାହିଁ ଅଥଚ ମୁଁ ଖାଲି ଗୋଟିଏ ସମ୍ବାଦିକ—ଆଉ ଗୋଟିଏ ପ୍ରେସରେ ସାମ୍ବାଦିକତା କରି ପେଟ ପୋଷେ । କେବେ ଟୋକିଓରେ ତ ଆଉ କେତେବେଳେ ଆଫ୍ରିକାର କେଉଁ ନିଘଞ୍ଚ ଅରଣ୍ୟର ବିଶାଳ ବୃକ୍ଷମାନଙ୍କ ତଳେ ନ୍ୟୁୟର୍କ, ରୋମ, ପ୍ୟାରିସ ଏସବୁ ସ୍ଥାନର ମହତ୍ତ୍ୱ ଉପଲବ୍ଧି କରିପାରି ନଥିଲି—

କିନ୍ତୁ ଜାପାନର ପ୍ରଥ ଗଲ କଥା ମନେପଡ଼ିଲେ ମୋ ମନରେ ରୋମାଞ୍ଚ ଜାତ ହୁଏ।

ଦିଷ୍ଟାକୋ ! ତୁମେ ଭାବିପାରିବନି କାହିଁକି ହଠାତ୍ କାହାକୁ (ଅନ୍ତତଃ ତୁମକୁ କିମ୍ବା ତାଙ୍କୁ) ନଜଣାଇ ମୁଁ ଏଠାକୁ ପଳେଇ ଆସିଲି । ଆଉ ଏଠାରେ ବି ମୁଁ ନିଜେ ନିଜର ସମସ୍ତ ମାନବିକତାକୁ ପୋଡ଼ି ଜାଳି ନିଜର ଚିତାରେ ନିଜେହିଁ ଜଳୁଛି । ତୁମେ ମୋ ଉପରେ ରାଗି ଯାଉଥିବ କେତେ ଥିଲି ସତରେ ତୁମକୁ ଭଲପାଉଥିଲି; ଆଉ ଏବେ ବି ଭଲ ପାଏ—ସ୍ୱାର୍ଥହୀନ ଭାବେ ଭଲପାଏ ଏବେବି ବିଶ୍ୱାସ କର !

ଆଜି ତୁମେ ଜାଣିବାକୁ ଇଚ୍ଛା କରୁଛ ମୋ ପଳାୟନର କାରଣ ? ସତରେ ତୁମକୁ କହୁଛି—କାରଣ ନିହାତି ନିଜର ଲୋକକୁ ନକହି କାହାକୁ ଅବା କହିବି ।

ସେଦିନ ହଠାତ୍ ତମେ କାବାରେଟ ଦେଖିବାକୁ ଯାଇଥିଲ କିନ୍ତୁ ମୋତେ କହିଇନଥିଲ । ଯେତେବେଳେ ମୁଁ ତୁମ ଡ୍ରଇଁରୁମରୁ ଘର ଭିତରକୁ ପ୍ରବେଶ କଲି ସେତେବେଳେ ମୁଁ ମୋର ସମସ୍ତ ସତ୍ତା ହଜେଇ ବସିଲି । ତାଙ୍କୁ ସେଦିନ କଣ ମୁଡ଼ିଏ ପିଉଥିଲେ ଏବଂ ମୋତେ ଦେଖି ଡାକିଲେ । ସତରେ ଯେ ମୁହୂର୍ତ୍ତ କେତେ ଭୟଙ୍କର ମୋ ମନରେ ଆଜି ବି ଭୟ ଲାଗେ । ତାପରେ ହଠାତ୍ ଟେବୁଲ ପାଖକୁ ଯାଇ କହିଥିଲେ, ମୋ ସିଗ୍ନେଚର ପାଇଁ । ମୁଁ ମନା କରିବାରୁ ସେ ଅତ୍ୟନ୍ତ ଉତ୍ୟକ୍ତ ହୋଇ ମୋ ଆଡ଼କୁ ପିସ୍ତଲ ଉଠାଇଲେ । ତତ୍ପରେ ମୁଁ ତମ ଗୃହରୁ ପଳାଇ ଆସିଲି ; କିନ୍ତୁ ମୋତେ ଶେଷ କରିବାର ପ୍ରତିଜ୍ଞା ମୁଁ ଶୁଣିଥିଲି । ବାହାରେ ଆଶ୍ଚର୍ଯ୍ୟ ଭାବେ ଛିଡ଼ା ହୋଇ ମୁଁ ମୋ ନିଜ ପ୍ରଶ୍ନର ଉତ୍ତର ଖୋଜି ପାଉ ନ ଥିଲି ।

ମୁଁ ତାଙ୍କୁ ମୋର ସମସ୍ତ ଇଚ୍ଛା ସତ୍ତ୍ୱେ ବାରଣ କରିଥିଲି କାହିଁକି ଦିଷ୍ଟାକୋ ତମେ ଜାଣ ! ମୋ ମା'ର ଅନ୍ତିମ ଇଚ୍ଛା ଥିଲା—ଯେତେବେଳେ ମୁଁ ପ୍ରଥମ ଥର ପାଇଁ ବାହାରିଥିଲି ରେମ—ମୁଁ ବିଦେଶରେ ବିବାହ ନକରିବା ପାଇଁ ।

ଆଶ୍ଚର୍ଯ୍ୟ ହେବ ଦିଷ୍ଟାକୋ ! ମୋ ମା'ର ଅନ୍ତିମ ଇଚ୍ଛା ପୂରଣ କରିବାକୁ ଯାଇ ମୁଁ ବେଶ ନିଃସଙ୍ଗ ହୋଇ ରହିଛି । ଆଉ ଯାହାକୁ ଘୃଣା କରି ତୁମ ସହ ପ୍ରଥମ ପରିଚୟ ହୋଇଥିଲା ସେ ମୋର କେବଳ ହିଁ ସାଥୀ ।

ଦେହ ମୋର ଅବଶ ଲାଗୁଛି । ଦାସ , କିଛି ପେଗ୍ !!
ଆଉ ନିଶାର ମାଦକତା ମୋତେ ଆଜି ଭୁଲେଇବ ଦେବ ।
ରାତି ହୋଇ ଆସୁଥିଲା—ତା ପରେ ମୁଁ କିଛି ଜାଣିନି !!!



# ଉଜାଣି ସ୍ମୃତି

● ଶ୍ରୀ ଅନ୍ତର୍ଯ୍ୟାମୀ ମହାପାତ୍ର

......ସ୍ମୃତିର ଝଙ୍କାର କେତେ କରୁଣ, କେତେ ବେଦନାମୟ ତାହା ଭାଷାରେ ବ୍ୟକ୍ତ କରିବା ବୋଧେ ସମ୍ଭବପର ନୁହେଁ......

ଆଇଜାକ୍ ନିଉଟନ୍ ବୈଜ୍ଞାନିକ ପଦ୍ଧତିରେ ସୂର୍ଯ୍ୟର ଉଜ୍ଜ୍ୱଳ କିରଣ ସାତଟି ରଙ୍ଗର ସମାବେଶରେ ପୂର୍ଣ୍ଣ ଘୋଷଣା କରି ଜଗତକୁ ଚମତ୍କୃତ କରିବା ପରି, ନିଜ ଜୀବନର ତୃତୀୟ ରଙ୍ଗ ଆବିଷ୍କାର କରି ସେଦିନ ମହିଳା କଲେଜର ଅଧ୍ୟକ୍ଷା ରଶ୍ମିରେଖା ବିବ୍ରତ ହୋଇ ଉଠିଥିଲେ । ମିଃ ନିଉଟନ୍‌ଙ୍କ ବାଣୀକୁ ସିନା ସମଗ୍ର ଜଗତ ଖୁବ୍ ଶ୍ରଦ୍ଧାର ସହିତ ସମ୍ମାନ କରିଥିଲା, କିନ୍ତୁ ଅଧ୍ୟକ୍ଷାଙ୍କ ଆବିଷ୍କାରକୁ ଗ୍ରହଣ କରିବାକୁ କେହି ନ ଥିଲେ । କେବଳ ସେଇ ନିର୍ଜୀବ କୋଠରୀରେ କାନ୍ଥଘଡ଼ିଟା ଯାହା ଟିକ୍ ଟିକ୍ ଶବ୍ଦ କରି ସମ୍ମତି ପ୍ରଦାନ କରିଥିଲା । ଆଉ ତା ସହିତ କାନ୍ଥ ଆଲମିରାରେ ଥିବା ଭାରତ ସରକାରଙ୍କ ସ୍ୱର୍ଣ୍ଣ ପଦକ ଓ ମାନପତ୍ର ବିଡ଼ାଟା ଯେପରି ମୂକ ଦର୍ଶନ ପରି କାନ୍ଥଘଡ଼ିର ସମ୍ମତିକୁ ଅନୁମୋଦନ କରୁଥିଲା ।

ଶିହରି ଉଠିଲେ ରଶ୍ମିରେଖା— ବିଗତ ଜୀବନର ସମସ୍ତ ଖାଲ,ଖମାକୁ ପୂର୍ଣ୍ଣ କରି ଆଗେଇ ଆସିଲା ସ୍ମୃତିର ବନ୍ୟା— ଯେପରି ପହିଲି ଭାଦୁଅରେ ଦୁରନ୍ତ ପାହାଡ଼ରେ କୁଆଁରୀ ମେଘକନ୍ୟା ମଥା ପିଟି ପିଟି ନିଜର ପ୍ରିୟକୁ ନପାଇ ଲୋତକ ଢାଳେ ଆଉ ସେଇ ଲୋତକ ନଦୀରେ ବହି ଯାଇ ମହାପ୍ଲାବନର ହେତୁ ହୁଏ । ଠିକ୍ ସେଇପରି ଅବସ୍ଥା ଥିଲା ଅଧ୍ୟକ୍ଷା ରଶ୍ମିରେଖାଙ୍କର......

ଲେଖାଯୋଖାରେ ମହାବିଦ୍ୟା ତାର ନିଣ୍ଡେ । ସେ ଚିଠି ଦେଇଛି ବାରିପଦାରୁ—''ଭଉଜଉ' ! ଆଗାମୀ ବାରୁଣୀଘାଟରେ ହେଉଥିବା ଜାଗରମେଳାକୁ ତୁମେ ଆସିବ । ନିହାତି ଦିନଟିଏ ପାଇଁ ।'' ସେ ସିବାକୁ ଲେଖିଛି—ରାଣ ଦେଇଛି ।

ଯେଉଁ ଜାଗରମେଳା ତାଙ୍କ ଜୀବନରେ ଶତ ଦୁଃଖର ଝଞ୍ଜା ତୋଳିଛି, ଯେଉଁ ସ୍ଥାନର ନାମ ଉଦ୍ରେକମାତ୍ରେ ତାଙ୍କ ମନରେ ସହସ୍ର ବୃଶ୍ଚିକ ଦଂଶନର ଯନ୍ତ୍ରଣା ହେ

ଅନୁଭବ କରୁଛନ୍ତି । ଆଜିର ଏଇ ମଉଳା ଗୋଧୂଳିରେ ମହାବିଦ୍ୟାର ଚାରି ଖଣ୍ଡିକ ସେଇ ଯନ୍ତ୍ରଣାକୁ ବହୁଗୁଣରେ ବୃଦ୍ଧି କରାଇ ତାଙ୍କ ମନ ପ୍ରାଣକୁ ଆନ୍ଦୋଳିତ କରୁଛି ।

ସତେ ସେ କଣ' ସେଇ ଯନ୍ତ୍ରଣାରୁ ମୁକ୍ତି ପାଇବେ ?? ନା, କେବେ ଏହା ସତ୍ୟ ହୋଇ ନ ପାରେ ! ଯେତେ ଦିନ ଯାଏ ସେ ତାଙ୍କ ପ୍ରିୟ ସ୍ୱାମୀଙ୍କ ଉଷ୍ଣପରଶର ଅଶ୍ରୁ, ରେଣୁ ଅନୁଭବ କରୁଥିବେ ସେତେ ଦିନ ଯାଏ ଯେତେ ବଡ ଶକ୍ତି ହେଉ ପଛେ ତାଙ୍କୁ ଏ ଯନ୍ତ୍ରଣାରୁ ମୁକ୍ତ କରି ପାରିବ ନାହିଁ । ଯାହା ଏକ ନିଷ୍ଠୁର ସତ୍ୟ ତାହାର ବିଲୀନ କ'ଣ ଏତେ ଶୀଘ୍ର ସମ୍ଭବପର.........

× × × ×

ଜୀବନର ପ୍ରଥମ ଉଙ୍ଗରେ ସେ ଯେତେବେଳେ ନିଜକୁ ନିଜେ ପରଖେ ଆଉ ଦେଖେ—ବାପା ତାର ଜଣେ ଅତିରିକ୍ତ ଜିଲ୍ଲାପାଳ ଭାବେ ପୁରୀରୁ ବଦଳି ହୁଅନ୍ତି ବାରିପଦା । ରଶ୍ମିରେଖା ସେତେବେଳେ ବି. ଏ. ଶ୍ରେଣୀର ଛାତ୍ରୀ । ଅତିରିକ୍ତ ଜିଲ୍ଲାପାଳ ଭାବେ ବାପାଙ୍କର ଖ୍ୟାତି ଯେତେ ପରିପୁଷ୍ଟ; ଅତିରିକ୍ତ ଜିଲ୍ଲାପାଳଙ୍କ ଝିଅ ଭାବେ ରଶ୍ମିରେଖାଙ୍କର ମଧ୍ୟ ଖାତିର କହିଲେ ଚଳେ ସେହିପରି ପରିବ୍ୟାପ୍ତ—

ପ୍ରତ୍ୟେକ ଦିନ କିଛିନା କିଛି ନୂଆ ନୂଆ ପ୍ରୋଗ୍ରାମ୍ ଆସେ । କାଲି ଯଶୀପୁର ଡାକବଙ୍ଗଳାରେ ରହଣି ହେଲେ ତା' ପରଦିନ କପ୍ତିପଦା ବା ମାଣଚି ରେଷ୍ଟହାଉସ୍ । କେବେ ଯଦି ଅଭୟାରଣ୍ୟ ଟୁର୍ ହେଲା ତ ସୁରିଦିନ ଛାଡ଼ ଶିଟଂ କମ୍ବା ଲିଲୁଂର ଘନ ଘୋର ଅରଣ୍ୟ ପ୍ରାନ୍ତରରେ ହୁଏ ବଣଭୋଜି ।

ଏକ ଭ୍ରମଣକାରୀ ସମ୍ପ୍ରଦାୟ ଭାବେ ଯେତେବେଳେ ସେ ନିଜକୁ ଉଙ୍ଗେଇ ଦେଉଥିଲେ ସେତେବେଳେ କେତେ କେତେ ସୁନେଲି ମାୟାଚିତ୍ର ତାଙ୍କ ମନର ପର୍ଦ୍ଦାରେ ଦେଖା ଦେଇ ପୁଣି ଭାସିଯାଉଥିଲା ।

ବାରିପଦାରୁ ବାଙ୍ଗିରିପୋଷି ଟ୍ରେନରେ ଗଲାବେଳେ ତାଙ୍କ ମନରେ ଗଭୀର ଆନନ୍ଦର ଢେଉ ଉଠେ । ଧୀର ମନ୍ଥର ଢେଣୀଳ ରେଲଗାଡ଼ି ମନଗହନରେ ବାଝିଦିଏ ଫଗୁ—ପୁଣି ସେ ଫଗୁ ଉଙ୍ଗ ଆଦିବାସୀର ହସ ଖେଳ ଦୁନିଆ ଦେଖି ହଲିଯାଏ—ଉଙ୍ଗର ଛିଟା ଖସି ପଡ଼େ । ଖାଲି ଯାହା ଛାପା ରହିଯାଏ ଦିନେ ଅଧେ ସମୟ ପାଇଁ ।

ସେ ଦିନ ବୋଧେ ରବିବାର—ପରଦିନ ଜାଗରଯାତ୍ରା—ମୟୂରଭଞ୍ଜର ତିନି ଚାରୋଟି ସ୍ଥାନରେ ଜାଗର ଯାତ୍ରା ହୁଏ । ସଦର ମହକୁମାରେ ବାରୁଣୀ ମହାଦେବଙ୍କ ନିକଟରେ ହେଉଥିବା ଯାତ୍ରା ପ୍ରସିଦ୍ଧ । ବାପା ନୂଆହୋଇ ଆସିଥିବାରୁ ତାଙ୍କର ଦାୟିତ୍ୱ ଥିଲା ଶିଟଂରେ ତିନି ଯାତ୍ରା ଦାୟିତ୍ୱ ନିର୍ବାହ କରିବା । ମା' ପୁଣି ଶିଟଂର ପ୍ରସିଦ୍ଧତା ପାଇଁ ଏ ସୁଯୋଗ ଛାଡ଼ିବେ କାହିଁକି ? ଘରେ ରଶ୍ମି ସମସ୍ତଙ୍କ ଠାରୁ ବଡ଼ ଥିବାରୁ ସମସ୍ତ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ

ଥିଲା—ପଡ଼ୋଶୀ ଏସ୍. ପି· ଙ୍କ ଝିଅ ଗିନ୍ନି ଟେଲିଫୋନ୍‌ରେ କହୁଛି—ରଶ୍ମି ଆମେ ସବୁ ୮ଟାରେ ଏଠାରୁ ଯିବା । ତୁମ ଗାଡ଼ି ତ ନାହିଁ—ବାପା ମାଣ୍ଡୀରେ ଥିବାରୁ ଆମ ଗାଡ଼ିଟା ଅଛି, ଡ୍ରାଇଭର ମଧ୍ୟ ଅଛି । ତୁ ପ୍ରସ୍ତୁତ ଥିବୁ······

ବାହାରେ ମଟର ହର୍ଣ୍ଣ ଶୁଭିଲା । ହସି ହସି ଘରକୁ ପଶିଲା ସ୍ୱର୍ଣ୍ଣ ଆଭା-ଜଣା ନିଷ୍କଳା ଷୋଡ଼ଶୀ ରୂପସୀ ଗିନ୍ନି । ଗୁଡ଼ଇଭିନିଂ ଜଣାଇଲା ରଶ୍ମିଙ୍କୁ—ହସି ହସି ସମସ୍ତେ ବାହାରିଲେ ମେଳାକୁ—ସବୁଦିନେ ଯଦିଓ କଲେଜ ଡ୍ରେସରେ ରଶ୍ମି ନିଜକୁ ସଜାଇନିଅନ୍ତି ତଥାପି ସେ ଦିନ କାହିଁକି ବଧୂବେଶରେ ବାହାରିବା ଦେଖି ତାଙ୍କୁ ହସି ହସି ଗିନ୍ନି କହିଲା କ'ଣ ମେଳାକୁ ଯାଉଛୁ ନିଜର ମନ ପୁରୁଷଙ୍କ ସନ୍ଧାନରେ । ମହାଦେବଙ୍କୁ କହିବୁ ଗୋଟିଏ ମନ ଲାଖି ସାଥି ( Co-Body ) ଜୁଟାଇ ଦେବାପାଇଁ । ସ୍ମିତ ହସ ହସି ରଶ୍ମି ଫାଜିଲ କହି ସବୁ ହାତର ନରମ ଚୁପା ଦେଇଥିଲେ ଯୌବନଭରା ଗିନ୍ନିର ଅଙ୍ଗୁର ରଙ୍ଗ ବୋଳା ଉନ୍ନତ ଗଣ୍ଡରେ···ସମସ୍ତେ ହସି ହସି ପୋର୍ଟିକୋରେ ଥିବା କାରରେ ବସିଲେ—

ଠେଲାପେଲାର ଆନନ୍ଦରେ ହଜି ଯାଇଥାନ୍ତି ଥୋଡ଼େ ଲମ୍ବାକଲିଆ ଚପା-ପ୍ୟାଣ୍ଟ ପିନ୍ଧା ଛତରା ଟୋକା । ପର ଝିଅ ବୋହୂଙ୍କୁ ଦେଖି ଶୁଣାଇ ଶୁଣାଇ ଏଡ଼େ ଏଡ଼େ ପାଟିକରି କହିବା ଯେପରି ତାଙ୍କ ବାପ ଅଜା ପୁରୁଷରୁ ଏକ ବଂଶଗତ ବ୍ୟାଧିରେ ପରିଣତ ହୋଇଛି ।

କିଏ କାହାକୁ କେତେ କହିଯାଉଛି । ବିକା କିଣା ଘନେଇ ଉଠିଛି । ନୂଆ ହୋଇ ବାହା ହୋଇଥିବା ଆଉ ନୂଆ ହୋଇ ବାରିପଦାକୁ ବଦଳି ହୋଇ ଆସିଥିବା ସରକାରୀ ଚାକିରିଆ ପିଲାପିଲି ଧରି ବୁଲୁଛନ୍ତି । କେଉଁଠି କେଉଁଠି ଅନ୍ଧାରୁଆ ଗଛ କଡ଼ରେ କାଚ ଗିଲାସ ଆଉ ବୋତଲର ଟୁଣ ଟାଣ ଶବ୍ଦ ଶୁଭୁଛି । କିଏ କହୁଛି ଆଉ ଟିକେ ଦେ—କିଏ କହୁଛି ଆଗତୁରା ପଇସା ଦେ'ବେ । ପାଖ ମଶାଣିରୁ ମଡ଼ାର ପୋଡ଼ା ଗନ୍ଧ ଥରେ ଥରେ ଭାସିଆସି ଅସ୍ଥିର କରୁଛି । ଭଙ୍ଗା ଗଢ଼ା ସଂସାରରେ ଏଇ ମେଳା ଉତ୍ସବ ଏକ ଯାଦୁକାରୀ···ଏକ ଇନ୍ଦ୍ରଜାଲ···ଭାନୁମତୀ ପେଡ଼ିର ଲୁହକ···

× × × ×

ବୁଲି ବୁଲି ପ୍ରଧାନ ଗେଟ୍‌ର ବାଁ ପଟକୁ ମାଟିକାମର ବିଭିନ୍ନ ମୂର୍ତ୍ତିଥିବା ଏକ ଦୋକାନ ପାଖରେ ଅଟକି ଗଲେ ସମସ୍ତେ । ଦୁଇଜଣ ପୋଲିସ ଇନ୍‌ସ୍‌ପେକ୍ଟର ଏମାନଙ୍କ ତତ୍ତ୍ୱାବଧାନରେ ଥାନ୍ତି । ପ୍ରୌଢ଼ ନିଜାରତ୍ ଅଫିସର ପ୍ରତି କଥାରେ ହଜାର ଥର ଆଜ୍ଞା ଆଜ୍ଞା କହୁଥାନ୍ତି ରଶ୍ମିଙ୍କୁ । ଅତିରିକ୍ତ ଚାକିରି ଅଭିଜ୍ଞତାର ଏ ଫଳ—କନ୍ୟାଙ୍କ କଥାରେ ବାପା ରାଗିଲେ ଚାକିରିର ଭବିଷ୍ୟତ ସମ୍ପୂର୍ଣ୍ଣ ଅନ୍ଧକାର—କିରାଣୀ ଚାକିରିକୁ ମଧ୍ୟ ଅଯୋଗ୍ୟ—ଯେମିତି ଥୋଡ଼େ ଅନୁପଯୁକ୍ତ ଅଥବା ଅଫିସର ହୋଇ ବନ୍ଦୋବସ୍ତ ବିଭାଗରେ ରହି ଅନ୍ୟର ସଂଖ୍ୟାରେ ନିଜର ସଂଖ୍ୟା କରୁଛନ୍ତି, ସ୍ୱାଙ୍କ ଦଶାଟା ମଧ୍ୟ ତାଙ୍କ ଦଶାଠୁଁ ବଳିଯିବ—

ହଠାତ୍ ଗୋଟାଏ ମାଟି ମୂର୍ତ୍ତିକୁ ଦେଖିଲାକ୍ଷଣି ରଶ୍ମିର ମନ ଯମୁନା ଚହଲି ଗଲା—ସ୍ଥିର ଜଳରେ ପଥର ଖଣ୍ଡେ ପଡ଼ି ଯେପରି ତାହା ଚହଲି ଚହଲି ଏ କୂଳ ସେ କୂଳ ଖାଏ, ଠିକ୍ ସେହିପରି ରଶ୍ମିର ଆଦେଶକୁ ଅପେକ୍ଷା ନ କରି ଧୀର ଆଉ ସଂଯତ ଭାବେ ଦୋକାନୀ ଜଣକ ଦୁଇଟି ମୂର୍ତ୍ତୀ ବଢ଼ାଇଦେଲା ରଶ୍ମିରେଖାଙ୍କ ଆଡ଼କୁ । ସେଥିରୁ ଗୋଟିଏ ପ୍ରଧାନମନ୍ତ୍ରୀ ଶାସ୍ତ୍ରୀଙ୍କର ଆଉ ଅନ୍ୟଟି ଗୋପବନ୍ଧୁଙ୍କର ।

କ୍ରମେ ଲୋକ ଗହଳି ଜମି ଉଠିଲା । ବିଶେଷତଃ ଯେଉଁ ଦୋକାନରେ ମହିଳା ଗ୍ରାହକଥାନ୍ତି ସେ ଦୋକାନୀର ଜିନିଷ ଯେତେ ନିକୃଷ୍ଟ ଧରଣର ଥିଲେହେଁ ଅସାଧାରଣ ଭାବେ ସେଠାରୁ ଜିନିଷ ଯେପରି ବିକ୍ରୀ ହୋଇଥାଏ, ସେଇ ଯୁକ୍ତି ବଳରେ ଏଇ ସ୍ୱଳ୍ପ ସମୟ ମଧ୍ୟରେ ସେଇ ମୃଣ୍ମୟୀ ଶିଳ୍ପୀ ଦୋକାନୀର ଅର୍ଦ୍ଧାଧିକ ମୂର୍ତ୍ତି ବିକ୍ରୟ ହୋଇଗଲା ।

ରଶ୍ମି ମୂର୍ତ୍ତିର ଦାମ ବାରମ୍ବାର ଉଚ୍ଚାରଣ କରି ଲାଗିଲେ । ହେଲେ ନାରୀ-କଣ୍ଠର ସ୍ୱଳ୍ପ ସ୍ୱର ପୁରୁଷ ସିଂହର ଗୁରୁଗର୍ଜ୍ଜନ ପାଖରେ ପରାସ୍ତ ହେଲା—ବଡ଼ ବିରକ୍ତିର ସହିତ ଶେଷକୁ ରଶ୍ମି କହିଲେ, ହେ ଶାସ୍ତ୍ରୀବାଲା—ତମେ ଶାସ୍ତ୍ରୀଙ୍କ ପ୍ରତିମୂର୍ତ୍ତି କରି ବିକ୍ରୟ କରିପାରୁଛ କିନ୍ତୁ ତାଙ୍କ ଆଦର୍ଶରେ ପରିଚାଳିତ ହେଉନା କାହିଁକି ?

ଲଜ୍ଜିତ ହେଲା ଦୋକାନୀ—ଅବଶ୍ୟ ଅନ୍ୟ କୌଣସି ଦୋକାନୀ ହୋଇଥିଲେ ନିଜର ବେହେଡ଼ା ଦାନ୍ତକୁ ନେଫେଡ଼ି ଦୁଇଚାରି ପଦ କହିଥାନ୍ତା—କିନ୍ତୁ ସେ ଦୋକାନୀ ସମ୍ଭ୍ରମତା ଦେଖାଇ କହିଲା—କ୍ଷମା ଦେବେ ମିସେସ୍······ହଠାତ୍ ପଛରୁ ସେଟେଲମେଣ୍ଟ ଅଫିସରଙ୍କ ଝିଅ ରଂଜିତା କହିଲା ସେ ମିସେସ୍ ନୁହଁନ୍ତି ମିସ୍ ।

—କେଡେ ଅଭଦ୍ର ତୁମେ ହୋ—ରଂଜିତାର ତୁଣ୍ଡରେ ହାତ ଦେଇ ରଶ୍ମି କହିଲେ ଜଣେ ଭଦ୍ରଲୋକ ଯାହା କହିଲେ ହଠାତ୍ ଏପରି ତାର ପ୍ରତିବାଦ କରିବା ବିଶେଷତଃ ଏପରି ସ୍ଥାନରେ ତୋର ଉଚିତ୍ ହୋଇନ ରଂଜିତା—

ହସି ହସି ସେଠାରୁ ସମସ୍ତେ ବିଦାୟ ହେଲେ—

× × × ×

ଫିଲୋସଫିର ଅନର୍ସ କ୍ଲାସରେ ପ୍ରଥମେ ପ୍ରଥମେ ରଶ୍ମିକାନ୍ତଙ୍କୁ ଦେଖି ଦୋ' ଦୋ ଚିହ୍ନା ହେଲେ ରଶ୍ମିରେଖା—ବିଗତ ମେଳାର ଦୋକାନୀ କ'ଣ ସତେ ଜଣେ ଅଧ୍ୟାପକ—ସ୍ଥିର ରହିପାରିଲା ନାହିଁ ମନ ପ୍ରାଣ······ଯେଉଁ ଦୋକାନୀକୁ ସେ ଅନ୍ତର ସହିତ ଭଲ ପାଇଥିଲେ ତେବେ ସେଇ କ'ଣ ଏଇ ରଶ୍ମିକାନ୍ତ—ଥରେ ଏକ ଅଳସ ମଧ୍ୟାହ୍ନରେ ସେଇ ମାଟିମୂର୍ତ୍ତୀ ଦୁଇଟିକୁ ଓଲଟ ପାଲଟ କରି ଦେଖି ଦେଖି ତାର ସନ୍ଧାନ ନେଲେ ରଶ୍ମିରେଖା—ମାଟି ମୂର୍ତ୍ତିର କୌଣସି ଏକ ଅଂଶ ବିଶେଷରେ ରଶ୍ମିକାନ୍ତଙ୍କ ନାମ ସ୍ପଷ୍ଟ—

× × × ×

……ଚକ ଘୂରିଲା । ବାପା ପ୍ରମୋଶନ ପାଇ ଦିଲ୍ଲୀ ବଦଳି ହେଲେ । ସେମାନଙ୍କର ଦିଲ୍ଲୀକୁ ଆସିବାର ବହୁ ପୂର୍ବରୁ ରଶ୍ମିକାନ୍ତ ଥିଲେ ଦିଲ୍ଲୀର ଅଧିଶକ୍ତ ଶାସନମୁଖ୍ୟ… । ଥରେ ଏକ କାବାରେଟ୍ ଆସରରେ ରଶ୍ମିକାନ୍ତଙ୍କର ପରିଚୟ ହେଲା ଅମିତାଭ ବାବୁଙ୍କ ସହିତ । କାଳର ଆବର୍ତ୍ତିରେ ରଶ୍ମିଙ୍କର ପାଣିଗ୍ରହଣ କଲେ ରଶ୍ମିକାନ୍ତ । …ଜଗତର ସେଇ ଫିଲୋସଫି ଅଧ୍ୟାପକ—ଆଉ ମାଷ୍ଟ୍ରାରୂପୀ ମୃଣ୍ମୟୀ ଶିଳ୍ପୀ…

ଜୀବନର ଦ୍ୱିତୀୟ ରଙ୍ଗ ତାଙ୍କର ଉନ୍ମୋଚନ ହେଲା । ସେଉଦିନ ମୁକୁଳା ଦିଲ୍ଲୀ ଆକାଶରୁ ନିଅନ ଆଲୋକର ଛୁପା ଛୁପା ତାରା ଫୁଲର ତୋରଣ ତଳେ ନିଜର ଅତି ପାଖକୁ ଟାଣିନେଇ ପୁରୁଷତ୍ୱର ପୃଷ୍ଟି ଆବେଗତା ନେଇ ଗୌରବରେ ସିନ୍ଦୂର ଟୋପାଏ ଆଙ୍କିଦେଲେ ତାଙ୍କର କୃଷ୍ଣକେଶ ଆଲୁଳାୟିତ ସୀମନ୍ତରେ । ଆଉ ତା' ପରେ ପରେ…… । କୁଆଁରୀ କନ୍ୟାର ପାଣ୍ଡୁଲିପି ବଦଳିଗଲା ପୌରୁଷତ୍ୱର ଶୀତ୍କାରରେ । ମର୍ମେ ମର୍ମେ ଅନୁଭବ କଲେ ରଶ୍ମିରେଖା ଏକ ନୂତନ ପଦାର୍ଥ ଯେପରି ତାଙ୍କର ଉଦରସ୍ଥ ହୋଇ ଶରୀରର ସବୁ ଅଣୁ ପରମାଣୁକୁ ନଷ୍ଟ କରି ତାର ପ୍ରତି ସ୍ତରେ ସ୍ତରେ ରଶ୍ମିକାନ୍ତଙ୍କର ପ୍ରତିଷ୍ଠା କରୁଛି ।

ତାଙ୍କ ଦେହର ରଙ୍ଗ, ମନର ଅବସ୍ଥା, ସର୍ବୋପରି ରକ୍ତ ମାଂସ ପୁଷ୍ଟ ଜଡ଼ ପିଣ୍ଡଟା ଯେପରି ବଦଳି ଯାଇଛି । ରଶ୍ମିରେଖାଙ୍କ ଅସ୍ତିତ୍ୱ ନାହିଁ । ସେ ଯେପରି ଆଜି ଦୁର୍ବଳ, ଆଜି ଶ୍ରୀହୀନ—ବୈଶାଖୀର ରୌଦ୍ର ମଧ୍ୟାହ୍ନରେ ଯେପରି ଚତୁର୍ଦ୍ଦିଗ ହୁତୁହୁତୁ ହୋଇଥାଏ ସେହିପରି ଏବେ ତାଙ୍କର ଏଇ ସମଗ୍ର ଶରୀର ଧରିତ୍ରୀରେ ରଶ୍ମିକାନ୍ତଙ୍କ ରଶ୍ମି-ଝଲକ ଧୂମ୍ରହୀନ ଭାବେ ଦୀପ୍ତିମାନ । ସେ ଦୀପ୍ତି ନିକଟରେ ରଶ୍ମିରେଖା ଏକାନ୍ତଭାବେ ନିଃସ୍ୱ—ଅସହାୟ…ଆଉ ଶରଣାପନ୍ନ !!…

ବିଭିନ୍ନ ଦପ୍ତର ସହିତ ସମ୍ପୃକ୍ତ ଥିବାରୁ ରଶ୍ମିକାନ୍ତଙ୍କର ମିଲିଟାରୀ ବିଭାଗକୁ ଉଚ୍ଚ ପଦବୀରେ ବଦଳି ହୋଇଛି । ଯେଉଁ କେତୋଟି ଗୁରୁଦାୟିତ୍ୱ ପଦବୀ ସହିତ ଭାରତର ତଥା କୋଟି କୋଟି ଲୋକଙ୍କର ସ୍ୱାଧୀନତା ଓ ନାଗରିକତ୍ୱ ବଜାୟ ରହିପାରିଛି ତହିଁ ମଧ୍ୟରୁ ଗୋଟିକରେ ଉପସ୍ଥାପିତ ହେଲେ ରଶ୍ମିକାନ୍ତ । ତାଙ୍କର ପ୍ରଧାନ କାର୍ଯ୍ୟାଳୟ ଥିଲା କାଶ୍ମୀରର ବମଣ୍ଡଳ ଘାଟୀ ।

ଦେଶ ଆଗେଇଛି । ବିଭିନ୍ନ ବାର୍ଷିକୀ ଯୋଜନାର ଖସଡ଼ା ତିଆରି ପାଇଁ ଭାରତରେ ବିଜ୍ଞ ଲୋକର ଅଭାବ ନାହିଁ । ଗ୍ରାମ ସଂଗଠନରୁ ଦଳ ତଥା ଦେଶ ସଂଗଠନ ମଧ୍ୟ ଯୋଜନା ସହିତ ସମତାଳ ଦେଇ ଆଗେଇ ଚାଲିଛି । ଦେଖାଯାଉଛି ଯୋଜନାର ଫଳ ସ୍ୱରୂପ, ଧନୀ ଅଧିକରୁ ଅଧିକ ଧନୀ ହେଉଛି ଓ ଦରିଦ୍ର ଅଧିକରୁ ଅଧିକ ଦରିଦ୍ର ହେଉଛି । ଏଥିପାଇଁ ଲୋକର ଅବା ନେତାଙ୍କର ଶୋଚନା ନାହିଁ । କେବଳ ଶୋଚନା ପାଞ୍ଚବର୍ଷ ପରେ କିପରି ଜନତା ଜନାର୍ଦ୍ଦନ ପୁଣିଥରେ ତାଙ୍କୁ ନିର୍ବାଚନ କରନ୍ତୁ । ଏଇ ଶିକ୍ଷା, ସଭ୍ୟତା ବା ସ୍ୱାଧୀନତାର ମୂଲ୍ୟ କ'ଣ କିମ୍ବା ଏଇ

ସ୍ୱାଧୀନତା ପ୍ରାପ୍ତିରେ ଲଭ ବା କଅଣ ? ବସ୍ତୁତଃ ସୃଷ୍ଟିହୁଏ ଦେଶର ଏଇ ସମ୍ବିଧାନ ପ୍ରଣୟନର ମୁଖ୍ୟ କାରଣ ସ୍ୱରୂପ ଅଧୋଗତି ଦ୍ୱାରା ।

ଦେଶ ଶାସନରେ ପ୍ରିୟାପ୍ରୀତି ଆଉ ମମତାର ସ୍ୱାର୍ଥ ଦେଇ କେତେ ଦିନ ପର୍ଯ୍ୟନ୍ତ ଏଇ ଭଙ୍ଗାଯୋଡ଼ା ଶାସନ ଚାଲିପାରେ । ସବୁ ଦେଶରେ ଶତ୍ରୁର ପ୍ରଭାବ କାଳେ କାଳେ ଅଛି । ଥୋକେ ପୁଣି ତ ଦେଶର ଶାସନ ଖସଡ଼ାରେ ବିଭ୍ରାଟ ସୃଷ୍ଟି କରି ନିଜର ଫାଇଦା ଉଠାଇବାକୁ ତତ୍ପର ହୋଇ ପଡ଼ନ୍ତି । କେଉଁ ପୁରାତନ କାଳରୁ ମଧ୍ୟ ଆମେ ଏହା ଉପଲବ୍ଧି କରୁଆଇଁ, ତେଣୁ ଶାନ୍ତିପ୍ରିୟ ସୁଜଳା ସୁଫଳା ପୁଣ୍ୟ ଭାରତରେ ନିଜର ଦାବି ଜାହିର କରିବାକୁ ପଡୋଶୀ ରାଷ୍ଟ୍ରମାନେ ଲାଳାୟିତ ।

ଶାନ୍ତି ଆଉ ସହଯୋଗ ମନୋଭାବର ମହାମନ୍ତ୍ରକୁ ମୁଖରେ ଉଚ୍ଚାରଣ କରି ଭିତରେ ଭିତରେ ମୂଳୋତ୍ପାଟନ ଉଦ୍ଦେଶ୍ୟରେ ମଧ୍ୟ କେତେକେ ଶକ୍ତିର ସଂଘର୍ଷ ପାଇଁ ପ୍ରସ୍ତୁତ ହୁଅନ୍ତି । ହୁଏତ ଏ ଲଢ଼େଇ ବା ସଂଘର୍ଷ ଯେତେ ଭୟାନକ ଅଥବା ମାରାତ୍ମକ ହୋଇ ପଡୁକେ ।

ଭାରତ ଉପରେ ଅଚାନକ ଭାବେ ବିପଦ ମାଡ଼ି ଆସିଥିଲା—ପଡ଼ୋଶୀ ରାଷ୍ଟ୍ର ଯୁଦ୍ଧର ଧ୍ୱନି ଦେଲା । ବନ, ପ୍ରାନ୍ତରରେ ଶବ୍ଦର ପ୍ରତିଧ୍ୱନୀ ହେଲା ପରି ଭାରତ ଭୂଇଁରୁ ପଡ଼ୋଶୀ ରାଷ୍ଟ୍ରର ହିଂସା ଡାକରାର ପ୍ରତିଶବ୍ଦ ଶୁଣାଗଲା । ଯୁଦ୍ଧର ମହାକାଳ ନୃତ୍ୟରେ ଭାରତର ଉତ୍ତର-ପଶ୍ଚିମ, ଉତ୍ତର ଓ ଉତ୍ତର-ପୁର୍ବ ପ୍ରକମ୍ପିତ ହେବାକୁ ଲାଗିଲା ।

ଶତ୍ରୁ ପକ୍ଷ ସହ ନିଜ ପକ୍ଷର ଶହ ଶହ ନରମୁଣ୍ଡ ଶାନ୍ତ ଭାରତ ମାଟିରେ ଲୋଟିଲେ । ଉପର ଭୂଇଁ ନର ରକ୍ତରେ ରଞ୍ଜିତ ହେଲା । ରଣ ଭୂଇଁ ମଶାଣିପରି ତାତଲା ରକ୍ତ ପିଇ ନିଶ୍ୱାସ ମାରିଲା·········।

ଭାରତ ସରକାରଙ୍କ ତରଫରୁ ଘୋଷଣା କରାଗଲା, ଜନୈକ ଅଫିସର ରଶ୍ମିକାନ୍ତ ଚମଡଲା ଘାଟୀରୁ ଫେରି ନାହାନ୍ତି···ଶତ୍ରୁ ପକ୍ଷ ଦ୍ୱାରା ସେ ନିହତ·····

× × × ×

ଦିଲ୍ଲୀ ବେତାର କେନ୍ଦ୍ରର ସମ୍ବାଦ ପରିବେଷଣ ପରେ ପରେ ରଶ୍ମିରେଖା ନିଜକୁ ନିଜେ ପ୍ରକୃତିସ୍ଥ କରି ପାରିଲେ ନାହିଁ । ପରିବାରର ଅକ୍ଲାନ୍ତ ସାନ୍ତ୍ୱନା ଓ ପ୍ରବୋଧନା ସତ୍ତ୍ୱେ ଏବେ ସେ କିଛି ଅଂଶ ଭାବେ ତାହାକୁ ଭୁଲିପାରିଛନ୍ତି । ଗତ ସାଧାରଣତନ୍ତ୍ର ଦିବସରେ ସ୍ୱାମୀଙ୍କର ଶ୍ରେଷ୍ଠ ସାହସିକତା ନିମନ୍ତେ ମୃତ ସ୍ୱାମୀଙ୍କ ପ୍ରତିନିଧିତ୍ୱ କରି ସେ କେନ୍ଦ୍ର ସରକାରଙ୍କଠାରୁ ପାଞ୍ଚ ଲକ୍ଷ ଟଙ୍କାର ପୁରସ୍କାର ଗ୍ରହଣ କରିଛନ୍ତି···

ଜୀବନରେ ଝଙ୍କାର ଅଭାବ ସେ କେବେ ହେଲେ ଅନୁଭବ କରି ନାହାନ୍ତି । ନିଜର ଜର୍ଜ୍ଜରିତ ଅଶାନ୍ତ ଆତ୍ମାକୁ, ଶିଖ ପ୍ରତୀକ୍ଷା ଭଗ୍ନ ହୃଦୟକୁ ଶାନ୍ତ ଶୀତଳ ପ୍ରଦାନ କରିବାକୁ ଶପଥ ନେଇ ସେ ବର୍ତ୍ତମାନ ସ୍ଥାନୀୟ ମହିଳା କଲେଜର ଅଧ୍ୟକ୍ଷା······

ମଥାରେ ସିନ୍ଦୂର ନାହିଁ କି ଆଖିରେ ଲୋଭନୀୟ କଜଳର ରେଖା ନାହିଁ··· ପୁରୁଷ ପ୍ରାଣକୁ ଉନ୍ମାଦିତ କରିବା ପାଇଁ ଦେହରେ ତାଙ୍କର ଆଦିମ କ୍ଷୁଧା ଇସାରା ଦେଇ ନାହିଁ । ହାତରେ ସ୍ୱର୍ଣ୍ଣ କଙ୍କଣ ପରିବର୍ତ୍ତେ ମାତ୍ର ଲେଡ଼ିଜ୍ ଓ୍ୱାଚଟିଏ । ଉଚ୍ଚ ଶ୍ରେଣୀୟ ପରିପାଟୀ ପରିବର୍ତ୍ତେ ଏବେ ସାଦାସିଧା ଭାବେ ଶୁଭ୍ର ସମ୍ବଲପୁରୀ ବା ସ୍ଥାନୀୟ ମିଲ ବୁଣା ଶାଢ଼ୀ ସେ ସମୟେ ସମୟେ ପରିଧାନ କରନ୍ତି । ଅଧ୍ୟକ୍ଷା ଭାବେ ଚଳନୀୟ ବ୍ଲାଉଜ ଏବଂ ହସ୍ତଶିଳ୍ପ ବିଭାଗ ଦ୍ୱାରା ପ୍ରସ୍ତୁତ ସାମାନ୍ୟ ମୂଲ୍ୟର ହ୍ୟାଣ୍ଡ ବ୍ୟାଗ୍‌ଟିଏ ମାତ୍ର ବ୍ୟବହାର୍ଯ୍ୟ ସାମଗ୍ରୀ ।

ପୁରୁଷ ସହିତ ମିଶି ନାରୀ ସଂସାର କରୁ ବା ନକରୁ ସେ କଥା ରଶ୍ମୀରେଖା ବୁଝନ୍ତିନ କିମ୍ବା କାହାକୁ ବୁଝାନ୍ତି ନାହିଁ । ତାଙ୍କର ଏକମାତ୍ର ଦର୍ଶନ ପୁରୁଷ ହେଉ ବା ସ୍ତ୍ରୀ ହେଉ ପ୍ରତ୍ୟେକ ଶିକ୍ଷିତ ହୁଅନ୍ତୁ । ପ୍ରତ୍ୟେକ କିଛି କିଛି ମହତ କାମ କରନ୍ତୁ ।

ଜୀବନରେ ଏଇ ତାଙ୍କର ତୃତୀୟ ରଙ୍ଗ । ସବୁ ରଙ୍ଗ ହୁଏତ ଦିନେ ଏଇମିତି ଆସିଥିଲା, ହଠାତ୍‌ମକ କରି ଚାଲିଯାଇଛି । ପୁଣି ଏଠୁ ସେଠି, ସେଠୁ ଏଠି ଏଇମିତି ହେବ । ଏଇଟା ଚିରନ୍ତନ ସତ୍ୟ—କିନ୍ତୁ ଏଇ ତୃତୀୟ ରଙ୍ଗର ପରିବର୍ତ୍ତନ ଅସମ୍ଭବ ।

ପ୍ରତ୍ୟେକ ରଙ୍ଗର ମହକକୁ ସେ ଆକଣ୍ଠ ଭରି ପାନ କରିଛନ୍ତି । ହସି ହସି ତାର ଯନ୍ତ୍ରଣା ସହିଛନ୍ତି । ଏଇ ରକ୍ତ ମାଂସର ଦେହ ଉପରେ ସେ ସବୁ ଅକଥନୀୟ ଯନ୍ତ୍ରଣା ଦେଇ ଅବହେଳିତ ଭାବେ ଚାଲି ଯାଇଛନ୍ତି । ସେ ସମସ୍ତଙ୍କୁ ଉପେକ୍ଷା କରିଛନ୍ତି ରଶ୍ମୀରେଖା—ହେଲେ ଏଇ ଶେଷ ରଙ୍ଗର ଯନ୍ତ୍ରଣା ସେ ସହିପାରୁନାହାନ୍ତି । ଏହା ଯେ କେଡ଼େ ଭୀଷଣ, କେଡ଼େ ଭୟାନକ । ସେ ଛିନ୍ନଭିନ୍ନ ହୋଇ ମ୍ରିୟମାଣ ହୋଇ ପଡ଼ୁଛନ୍ତି । ଭାଙ୍ଗି ପଡ଼ୁଛନ୍ତି—ମୃତ୍ୟୁ ଅପେକ୍ଷା ଶୀତଳ ମୃତ୍ୟୁକୁ ସେ ନିଶ୍ଚିତ ଭାବେ ଭୟ କରୁଛନ୍ତି ।

ସେ ଖୋଜୁଛନ୍ତି ଆଶ୍ରୟ, ସାନ୍ତ୍ୱନା, ଟିପି ଟିପି ଓଠରୁ ପଦେ ମିଠା କଥା···
ଅବାସ୍ତବ—ଅସମ୍ଭବ—ଅକଳ୍ପନୀୟ ! ! !

× × × ×

ଲୁହାଇ ଲୁହାଇ ନିଜର ଅଶାନ୍ତ କୋହ ସମ୍ବରଣ କରିପାରିଲେ ନାହିଁ ରଶ୍ମୀରେଖା । କାହାଠୁଁ ବା ସେ ଆଶା କରିବେ ସାନ୍ତ୍ୱନା, ଯେଉଁଠି ଘନ ତମିସ୍ରା ସେଠି ଆଲୋକର ସ୍ୱପ୍ନ କଳ୍ପନା ମାତ୍ର·



# ଦୁଃସ୍ୱପ୍ନ ଏକ ନଶିଥର

● ଗୋଟିଏ ପୁରୁଷର ଯାହା କିଛି ପ୍ରାପ୍ୟ ସେସବୁ ଥାଉଁ ଥାଉଁ ଆଜ କାହିଁକି ଏତେ ନିଃସହାୟ ଭାବରେ ଡାକ୍ତର ଶୁଭେନ୍ଦୁ ନିଜକୁ ଅର୍ପଣ କରିଥିଲେ ଏଇ ନର୍ତ୍ତକୀ ଇଭ୍ଲିନ୍ ନିକଟରେ ।

● ଶ୍ରୀ ସୁବୋଧ ଚନ୍ଦ୍ର ଦାସ

ପାମ୍ବିଚ ହୋଟେଲର ଏକ ରଂଗୀନ ପ୍ରକୋଷ୍ଠରେ ଆଲୋକର ବିପଣୀ । ନର୍ତ୍ତକୀ ଇଭ୍ଲିନ୍ ଅନେକ ଲୋଭନୀୟ ହୋଇ ପଡ଼ିଥିଲା । ଦେହର କଞ୍ଚା ମାଂସରେ ଫଗୁର ମହୋତ୍ସବ । ଆଖିରେ ଅଖିଏ କାମନାର ଇନ୍ଧନ । ରୂପରେ ଥିଲା କୋଟିଏ ଯୁଗର କ୍ଷୁଧା । ନିଜେ ଅତୃପ୍ତ ରହି ଅନ୍ୟର ଆଦିମ ପ୍ରବୃତ୍ତିକୁ ତୃପ୍ତିକରିବା ଥିଲା ତାର ପେଶା ।

ହେଡନ ସାହେବ ଢଙ୍ଗରେ ବିଦେଶୀ ସୁରାପାତ୍ରକୁ ତୋଳିଧରିଥିଲେ ଶୁଭେନ୍ଦୁ । ରଙ୍ଗୀନ ସୁରା ପାତ୍ରରୁ ସେ ପାସପୋର୍ଟ ସଂଗ୍ରହ କରୁଥିଲେ । ଇଭ୍ଲିନ୍‌ର ନିଷିଦ୍ଧାଞ୍ଚଳ ପାଇଁ ପାସ୍ ପୋର୍ଟ । ଏଇଥିରୁ ସେ ପାଉଥିଲେ ଶାନ୍ତି, ମୁକ୍ତି, ତୃପ୍ତି ସବୁକିଛି । ତା'ର ଅଖିଳ ଇନ୍ଦ୍ରିୟ ଭିତରେ ସାମୟିକ ଭାବରେ ହଜିବାକୁ ଅମୋଦ ମଣୁଥିଲେ ସେ । ରାତିର ଏକ ନିର୍ଜନ ପ୍ରହରରେ, ଏକ ତନ୍ଦ୍ରାବିଧୁର ମୁହୂର୍ତ୍ତରେ ଅନେକବାର ସେ ଏଇ ପ୍ରମୋଦ କକ୍ଷର ଅତିଥି ହୋଇଛନ୍ତି । ସଂଚିତ ଯୁଗର କାମନାକୁ ଚରିତାର୍ଥ କରିବା ପାଇଁ ସେ ଏଇ ପଥ ଅବଲଂବନ କରିଛନ୍ତି । ସମାଜ ତାଙ୍କୁ ଯେଉଁ ଚକ୍ଷୁରେ ଦେଖୁ, ଦୁନିଆ ତାଙ୍କୁ ଯେପରି ଭାବରେ ବିଚାର କରୁ ସେ ପାଇଁ ଚିନ୍ତେ ହେଲେ ସେ ବିବ୍ରତ ନୁହନ୍ତି । ହୋଇ ପାରନ୍ତି ସେ ଏକ ସାମାଜିକ ପ୍ରାଣୀ, କିନ୍ତୁ ସମାଜର ସ୍ନେହ ପ୍ରେମ, କରୁଣା ଇତ୍ୟାଦିର ଦୈନନ୍ଦିନ ନିସ୍ୱମରୁ ପୁରାପୁରି ଭାବରେ ସେ ବହିଷ୍କୃତ ନିଜର କୋମଳ ହୃଦୟ ଭିତରେ ରୁକ୍ଷତାର ଏକ ଭୀଷଣ ଆଲୋଡ଼ନ । ନିଜ ଉପରେ ସେ ନିଷ୍ଠୁର ଭାବରେ ପ୍ରତିଶୋଧ ନେଉଥିଲେ । ନିଜକୁ ତିଳ ତିଳ ଦଗ୍ଧ କରି ମନର ଜ୍ୱାଳାକୁ ଉପଶମ କରୁଥିଲେ ।

ବର୍ଷଣମୁଖର ଏକ ବସନ୍ତସନ୍ଧ୍ୟାରାତ୍ରି, ଧରଣୀର ଖୋଲା ବକ୍ଷ ଉପରେ ଅତି ଅସହାୟ ଭାବରେ କ୍ରନ୍ଦନ କରୁଥିଲା। କେଉଁ ବିରହିଣୀ ପ୍ରେମିକା ହୁଏତ ପ୍ରେମିକର ଅଭିସାର ରାତ ନିରାଶରେ ଅଶ୍ରୁ ତର୍ପଣ କରୁଥିବ ! ଆଉ କେଉଁଠି ହୁଏତ ନବବଧୂ ନିଜ ସ୍ୱାମୀର ପ୍ରଶସ୍ତ ବକ୍ଷ ଉପରେ ତୃପ୍ତିରେ ଆଗାମୀ କାଲିର ସ୍ୱପ୍ନ ଦେଖୁଥିବ। ସେଇ ହୋଷ୍ଟେଲର ଏକ କରୁଣ ପରିବେଶ ଭିତରେ ଅତି ନିଃସହାୟ ଭାବରେ ନିଜକୁ ବିଶ୍ଳେଷଣ କରୁଥିଲେ ଶୁଭେନ୍ଦୁ ପଟ୍ଟନାୟକ । ପାହାନ୍ତାର ଦୁଃସ୍ୱପ୍ନ ଭଳି ସେଇ ମର୍ମର ଅନୁଭୂତିକୁ ଅତୀତର ଛିନ୍ନ ପୃଷ୍ଠାରୁ ସଂଗ୍ରହ କରୁଥିଲେ। ନିଜର ଅବଚେତନ ମନ ଭିତରେ ଏବେବି ସେଇ କାହାଣୀର ଅସ୍ପଷ୍ଟ ଆଳାପ ଅହରହ ତାଙ୍କୁ ଅସ୍ଥିର କରୁଥିଲା । ପୁଞ୍ଜିଭୂତ ବେଦନା, ରୁଦ୍ଧିମନ୍ତ ଆବେଗ ତାଙ୍କୁ ଅତି ଅସହାୟ ଭାବରେ ଟାଣି ଧରିଥିଲା।

ଏଇ ଭିତରେ ଇମିତି ବିତିଗଲାଣି ଅନେକ ଦିନ। କ୍ୟାଲେଣ୍ଡର ପୃଷ୍ଠାରେ ସମୟର ସଂକେତ କେତେବାର ହୁଏତ ମ୍ଳାନ ପଡ଼ି ଆସିବଣି। ସମୁଦ୍ରର ଉଷର ବେଳାଭୂମିରୁ କେତେ ଯୁଗ୍ମ ପ୍ରେମିକର ପଦଚିହ୍ନ ନିଶ୍ଚିହ୍ନ ହୋଇସିବଣି; ତଥାପି ତାଙ୍କର ମନ ବୀଣାର ଛିନ୍ନ ତାରରେ ଏବେବି ବେଳେ ବେଳେ ସେଇ ହଜିଲା ଅତୀତର ତିକ୍ତ ସଂଗୀତ ଝଂକୃତ ହୋଇ ଉଠେ। ସମୟର ସ୍ରୋତରେ ଅନେକ ଅନୁଭୂତି ଭାସି ଭାସି ମନ ଉପବନରେ ଜମାଟ ବାନ୍ଧେ। ଏକ ପରାହତ ସୈନିକର ଜ୍ୱାଳା ଏବଂ ଯନ୍ତ୍ରଣାକୁ ନେଇ ଶୁଭେନ୍ଦୁ ସେଇ ଅତୀତକୁ ଫେରି ଯାଉଥିଲେ।

ବିଗତ ଅତୀତର ପୃଷ୍ଠ ଭୂମିକୁ ନେଇ ମଣିଷ ବର୍ତ୍ତମାନର ସ୍ଥିତି ରଚନା କରେ। ଆଜି ଯାହା ବର୍ତ୍ତମାନ, କାଲି ତାହା ଅତୀତ ଅନୁଭୂତିର ମୁଖପଦ୍ମ ରୂପେ ବଞ୍ଚିବାର ଖୋରାକ ଯୋଗାଏ। ଅତୀତ ସବୁବେଳେହିଁ ରହସ୍ୟମୟ। ସେଇ ରହସ୍ୟ ଉଦ୍‌ଘାଟନ କରିବାରେ କେତେ ଆମୋଦ! କିନ୍ତୁ ଶୁଭେନ୍ଦୁଙ୍କ ଜୀବନରେ ହୁଏତ ତାହା ଥିଲା ବ୍ୟତିକ୍ରମ।

"ପ୍ରିନ୍‌ସ ଅଫ୍‌ ଓ୍ୱେଲ୍‌ସ" ମେଡ଼ିକେଲ କଲେଜର କୃତୀଗୁଣୀ ତଥା କଳାକାର ଏଇ ସେଇ ଶୁଭେନ୍ଦୁ ପଟ୍ଟନାୟକ। ସଫେଦ ଶରତର ଏକ ଅମଳିନ ଅପରାହ୍ଣରେ ଚଳିବାଦଲ ଭଳି ଶିପ୍ରା ସହିତ ତାଙ୍କର ପରିଚୟ ହୁଏ । ଶିପ୍ରା ଥିଲା ତାଙ୍କର ଜୁନିଅର । ପ୍ରଜାପତିର ବିଚିତ୍ର ବର୍ଣ୍ଣ ବିନ୍ୟାସ ନେଇ ଯେଉଁଦିନ ସିପ୍ରା କଲେଜ ପ୍ରାଙ୍ଗଣରେ ପାଦ ଦେଲା, ସମସ୍ତଙ୍କୁ ସେ ବିମୋହିତ କରିଥିଲା—ଯୁବକ ପ୍ରାଣରେ ଭରିଦେଇଣିଲା ଅସୁମାରି ଯୁଗର କ୍ଷୁଧା । କଳ୍ପନାର ନାୟିକା ସଦୃଶ ସାଜିଥିଲା ସୁନାର ମାରିଚ। ମୁଖମଣ୍ଡଳର ଲଳିତ୍ୟ ରୂପ ସମ୍ଭାର ଭିତରେ ସଦ୍ୟସ୍ନାତ ଗୋଲାପ ସ୍ତବକ ଭଳି ତନ୍ଦ୍ରାବିଜଡ଼ିତ ଦୁଇଟି ଆଖି, ଲିଖି ରହିଥିଲା ତହିଁରେ ମଦିରାର କ୍ଳାନ୍ତିହରା ମାଦକତା । ଅବୟବର ପ୍ରତ୍ୟେକ ମାଂସପେଶୀରେ

ତୋଳହୋଇଥିଲା ଭୁର ଭୁର ରଙ୍ଗର ମହୋତ୍ସବ । ହସରେ ଥିଲା ସ୍ନିଗ୍ଧ ଜୋଛନାର ସ୍ପର୍ଶ—କଣ୍ଠରେ ଥିଲା କୋକିଳର ବୀଣାଝଣା ରାଗିଣୀ— ।

ଜୀବନରେ ଇମିତି ଗୋଟିଏ ସମୟ ଆସେ, ଯେତେବେଳେ କି ଚର-ଚୈତ୍ରର ଶିହରଣ ଆଣିଦିଏ ପ୍ରାଣରେ—ପ୍ରାଣରେ ସ୍ୱପ୍ନର ପାରିଜାତ ପ୍ରସ୍ଫୁଟିତ ହୁଏ ହୃଦୟର କେଉଁ ଏକ ନିଭୃତ କୋଣରେ । କଳ୍ପନାର ତାଜ୍ ଗଢ଼ି ସ୍ୱପ୍ନରେ ପହଁରିବାକୁ ଜାଗି ଉଠେ ଅନେକ ନିଶା । ଶିପ୍ରା ସହିତ ଶୁଭେନ୍ଦୁଙ୍କ ପରିଚୟ ଥିଲା ଅତି କମନ୍ । ସେଦିନ କଲେଜ ରଙ୍ଗମଂଚରେ ଆଲୋକର ରୂପସଜ୍ଜା—ମୁହଁରେ କୃତ୍ରିମ ରଙ୍ଗବୋଳି ନାୟିକା ଭୂମିକାରେ ଶିପ୍ରା କେତେ ଲୋଭନୀୟ ହୋଇ ପଡ଼ିଥିଲା ! ! ! ଆଉ ନାୟକ ଭୂମିକାରେ ଶୁଭେନ୍ଦୁଙ୍କ ନିଖୁଣ ଅଭିନୟ ଅଗଣିତ ଦର୍ଶକଙ୍କ ହୃଦୟକୁ ଆନ୍ଦୋଳିତ କରିଥିଲା । ମୁଖରିତ ହୋଇ ଉଠିଥିଲା ସେମାନଙ୍କର ପ୍ରଶଂସା ସବୁରି ମୁଖରେ । ···ବିରହ ବ୍ୟାଥାତୁର ନାୟିକାର କି ମର୍ମସ୍ପର୍ଶୀ ପ୍ରେମ ନିବେଦନ—ପୁଣି ନାୟକର ବଳିଷ୍ଠ ବାହୁ ବନ୍ଧନ ଭିତରେ ନାୟିକାର ନିର୍ଭୟ ଆଶ୍ରୟ ।

ଏଇ ଭିତରେ ଅନେକ ସମୟ ବିତିଯାଇଛି । ନିତି ଦିନିଆ ଅନୁଭୂତି ଭିତରେ ଦୁହିଁଙ୍କର ଘନିଷ୍ଠତା ବହୁତ ବଢ଼ିଯାଇଛି । ଆଖିରେ ଅଭିନୟର ପଲକ ଏବେ ନାହିଁ । ଉଭୟଙ୍କ ପ୍ରାଣରେ ଜାଗି ଉଠିଛି ଭଲପାଇବାର ପ୍ରବଳ ନିଶା । ଶିପ୍ରା ନିକଟରେ ହାରି ମାନିଛନ୍ତି ଶୁଭେନ୍ଦୁ ।

ଚୈତ୍ର ଗୋଧୂଳିର ଏକ ଆବେଗମୟ ମୁହୂର୍ତ୍ତ—ସଂଧ୍ୟା ଆଗମନୀର ବୀଣା ବାଜି ଉଠିଲାଣି ଅନେକ ବେଳୁ—ଆଉ ଟିକିଏ ପରେ ନୁଏତ ଆକାଶ ଆଲୋକର ଶ୍ରେଷଣୀରେ ଛାଇଯିବ । ନବ ବସନ୍ତର ସ୍ପର୍ଶରେ ବୃକ୍ଷଲତାର ଅବୟବରେ ଅପୂର୍ବ ଶିହରଣ । ଜୁବୁଲି ପାର୍କର ପ୍ଲାଷ୍ଟାରଂ ବେଞ୍ଚ ଉପରେ ଶିପ୍ରା ଆଉ ଶୁଭେନ୍ଦୁ—ଉଭୟେ ଲଗାଲଗି ହୋଇ ବସିଥିଲେ । ବୈଦ୍ୟୁତିକ ଆଲୋକର ସାଜସଜ୍ଜା ଭିତରେ ପାର୍କର ପରିବେଶ ନନ୍ଦନକାନନର ଭ୍ରମ ସୃଷ୍ଟି କରୁଥିଲା । ଶିପ୍ରାର ଚୂର୍ଣ୍ଣକୁନ୍ତଳ ଗୁଡ଼ିକୁ ସାଉଁଳୁ ସାଉଁଳୁ ଶୁଭେନ୍ଦୁ ପ୍ରଶ୍ନ କରିଥିଲେ —

"କହିପାରିବ ଶିପ୍ରା ! ଏ ରକ୍ତ ଗୋଲାପ ଦେହରେ ଏତେ ରଙ୍ଗ କିଏ ଭରି ଦେଲା ? ତା'ର ପ୍ରତିଟି ପାଖୁଡ଼ାରେ ଆକର୍ଷଣର ଏତେ ଉପାଦାନ ! !"

ନିରୁତ୍ତର ଶିପ୍ରା—

ଶୁଭେନ୍ଦୁ ତା'ର ନରମ ପାପୁଲିରେ ମୃଦୁଚାପ ଦେଇ କହିଲେ "ଏଇ ରକ୍ତ ଗୋଲାପ ଆମ ଭଲପାଇବାର ଏକମାତ୍ର ସନ୍ତକ ହେଉ । ଯୁଗ ଯୁଗ ଧରି ଏହାର ରକ୍ତିମା ଅଦିନରେ ଯେପରି ମ୍ଳାନ ହୋଇ ନ ଯାଉ—

—"ନା ନା ତମେ ସେ କଥା କୁହନା ଶୁଭେନ୍ଦୁ ।"

"କାହିଁକି ଶିପ୍ରା ! ଯାହା ସତ୍ୟ, ତାହା ଚିରନ୍ତନ । ତାହାହେଲେ ଆମର ଏତେ ଦିନର ଏଇ ଅନାବିଳ ଅନୁଭୂତିରେ କ'ଣ କିଛି ସତ୍ୟତା ନାହିଁ ?"

ଏକ ରୁଦ୍ଧ ଆବେଗର ଶୃଂଖଳତାକୁ ଚାପି ରଖିବାକୁ ଯାଇ ବୁକୁ ଅଗରି କେବଳ ଦୀର୍ଘଶ୍ୱାସ ବାହାରି ଆସିଲା ଶିପ୍ରାର ହୃଦୟ ଭିତରୁ । ଅଲକ୍ଷ୍ୟରେ ତା'ର ନରମ ଅଧର କଂପି ଉଠିଥିଲା—"ନା ଶୁଭେନ୍ଦୁ ଏସବୁ କିଛି ନୁହେଁ । ଏଇ ରକ୍ତ ଗୋଲାପକୁ ମୁଁ ଅନେକ ଭଲ ପାଏ । ଏହାରି ଭିତରେ କେଉଁ ଏକ ପ୍ରେତାତ୍ମାର ସର୍ବଗ୍ରାସୀକ୍ଷୁଧା ଆତ୍ମଗୋପନ କରି ରହିଛି ତା' ହୁଏତ ତୁମେ ଅନୁଭବ କରିପାରିବନି । ଜୀବନର ସୁପ୍ରଭାତରେ ସେଦିନବି ଇମିତି ନୂତନ ସୂର୍ଯ୍ୟ ଆଲୋକର ସମ୍ଭାର ନେଇ ଉଦିତ ହୋଇଥିଲା । ଏଇ ରକ୍ତଗୋଲାପର ପ୍ରତିଟି ପାଖୁଡ଼ା ଅନେକ ସୁନ୍ଦର ଥିଲା ସେଦିନ । କିନ୍ତୁ କ'ଣ କହିବି ଶୁଭେନ୍ଦୁ, ସେଇ ବାଳସୂର୍ଯ୍ୟ ଆଜି ଅଦିନରେ ଅସ୍ତମିତ ହୋଇଯାଇଛି, ମଉଳିଯାଇଛି ରକ୍ତଗୋଲାପ ଅକାଳରେ । ମୁଁ ଆଜି ନିଃସ୍ୱ, ନିଃସହାୟ । ମୋତେ ଟିକିଏ ଆଶ୍ରୟ ଦିଅ ଶୁଭେନ୍ଦୁ ।"

"ଦେଖ ଶିପ୍ରା, ଆକାଶରେ ସୂର୍ଯ୍ୟ ଉଠେ—ଭୂପୃଷ୍ଠର ଶିଶିର ବିନ୍ଦୁ ଉପରେ ତା'ର ପ୍ରତିବିମ୍ବ ପଡ଼ିଥାଏ । ଏହାକୁ ଲକ୍ଷ୍ୟ କରି ଯଦି ମଧ୍ୟସ୍ଥ କୌଣସି ଶୂନ୍ୟର ଲୋକ ଇର୍ଷା କରେ, ତେବେ ସେଥିରେ କୌଣସି ଫଳ ହୁଏନା । ତୁମ ଜୀବନର ଶିଶିର ବିନ୍ଦୁରେ ଯଦି କୌଣସି ସୂର୍ଯ୍ୟ ପ୍ରତିଫଳିତ ହୋଇଥାଏ, ତେବେ ମୁଁ କେବେ ବ୍ୟତିକ୍ରମ ସୃଷ୍ଟି କରିବାର ଆସ୍ଫାଳନ କରିବି ନାହିଁ । କିନ୍ତୁ ମୋ'ର ବିଶ୍ୱାସ ଶିପ୍ରା ଜୀବନର ପ୍ରଭାତରେ ପ୍ରଥମ କରି ମୁଁ ହିଁ ମୋର ଆତିଥ୍ୟ ଅର୍ପଣ କରିଛି ତମକୁ ସୂର୍ଯ୍ୟରୂପେ ।"

"ତା' ତ ମୁଁ କେବେ ଅସ୍ୱୀକାର କରିନି ଶୁଭେନ୍ଦୁ ।"

"ତେବେ କ'ଣ ହୋଇଛି ମୋତେ ଖୋଲି କୁହ—ରହସ୍ୟମୟୀନାରୀ ଭଳି ତମେ ଆଉ ପ୍ରହେଳିକା ସୃଷ୍ଟି କରନା ଶିପ୍ରା !"

"ନା – ଆଉ......."

"କାହିଁକି...... ?"

"ରାତି ଅନେକ ହେଲାଣି, ଫେରିଚାଲ । ଏଇ ଅଷ୍ଟମୀ ରାତିର ସିଲ୍‌ହଟ ଆଉ ଟିକିକ ପରେ ହୁଏତ ଲିଭିଯିବ । ଅନେକ ବାଟ ଯିବାକୁ ପଡ଼ିବ ଆମକୁ ।"

ଅଦୂରରେ କେଉଁ ଏକ ନଦୀପଠାର ବୁକୁଚିରି ରଥାଙ୍ଗମିଥୁନର କରୁଣ ବିଳାପ ଭାସି ଆସୁଥିଲା । ବାୟୁର ପ୍ରତିଟି ହିଲ୍ଲୋଳରେ । ପାର୍କର କୃତ୍ରିମ ଜଳରାଶିର ଆସ୍ତରଣ ଉପରୁ ଚନ୍ଦ୍ରର ପ୍ରତିବିମ୍ବ ନଷ୍ଟ ଭ୍ରଷ୍ଟ ହୋଇ ଆସୁଥିଲା । ପବନ ବହୁଥିଲା ଜୋର୍‌ରେ...... ।

ସମାଜର ଶାଣିତ ଚକ୍ଷୁରେ ଏମାନଙ୍କର 'ଅଭିନୟ' ଅନେକ ଦିନରୁ ଧରାପଡ଼ିଯାଇଥିଲା । ଅନେକ ଅସାମାଜିକ ପ୍ରାଣୀର ହୁଏତ ଏମାନେ ସମାଲୋଚନାର

ଶରବ୍ୟ ହୋଇଥିଲେ, ତଥାପି ନିର୍ଭୀକ ଭାବରେ ଶିପ୍ରାକୁ ଆଶ୍ୱାସନା ଦେଇ କହିଥିଲେ ଶୁଭେନ୍ଦ୍ର—

"ତୁମେ ଭୟ କରନା ଶିପ୍ରା ! ଦିନ ଆସିବ, ଯେତେବେଳେ ହୁଏତ ସମଗ୍ର ସମାଜ ବିରୁଦ୍ଧରେ ମୋତେ ସ୍ୱର ଉତ୍ତୋଳନ କରିବାକୁ ପଡ଼ିବ । ଏ ଭାବରୁ ନୀତିହୀନ ସମାଜକୁ ମୁଁ ଭ୍ରୂକ୍ଷେପ କରେନା । ଏଇ ସମାଜରେ ଅନେକ ଜୀବ ଅଛନ୍ତି, ଯେଉଁମାନେ କି ଆଦର୍ଶର ନୀତି ବାକ୍ୟ ବିସ୍ତାର କରି ଅନ୍ୟକୁ ଅନୁପ୍ରାଣିତ କରନ୍ତି; ଆଉ ଠିକ୍ ସୁଯୋଗ ନେଇ ଜଘନ୍ୟ ଭାବରେ ଶାଭତ୍ୱତାକୁ ପ୍ରଶ୍ରୟ ଦିଅନ୍ତି ଅନ୍ୟ ପରିପ୍ରେକ୍ଷୀରେ । ପ୍ରଖର ଦିବାଲୋକରେ ଯାହା ସମ୍ଭବ ନୁହେଁ, ଗଭିର ନିର୍ଜନତାରେ ତାହା ଅନେକ ସହଜ ସେମାନଙ୍କ ନିକଟରେ । ତେଣୁ ଆମର ଏଇ ଭଲ ପାଇବାରେ ଆବିଳତା କେଉଁଠି ଶିପ୍ରା ?

ଯୁବତୀ ସୁଲଭ ଚପଳତା ନେଇ ନିଜକୁ ଢଳଢଳ ଭାବରେ ଅର୍ପଣ କରିଥିଲା ଶିପ୍ରା ଶୁଭେନ୍ଦୁର ବଳିଷ୍ଠ ପୁରୁଷତ୍ୱ ନିକଟରେ । ଆଉ ସେହି ଅମୃତକୁ ଆକଣ୍ଠ ପାନ କରିବାକୁ ଦ୍ୱିଧା ପ୍ରକାଶ କରିନଥିଲେ ଶୁଭେନ୍ଦୁ ।

ସେଦିନ ଏକ ଅହେତୁକ ପରିବେଶ ଭିତରେ ଶିପ୍ରା ନିଜର ଶେଷ ଯୁକ୍ତି ବାଢ଼ିଥିଲା । ଦେଖ ଶୁଭେନ୍ଦୁ ଆଉ ବେଶୀ ଦିନ ଆମର ଏଇ ଅପରିପକ୍ୱ ଅଭିନୟ ଶୋଭା ପାଉନି । ଆମକୁ ଆମ ଜୀବନର ସ୍ଥାୟୀ ରଙ୍ଗମଞ୍ଚ ନିଶ୍ଚୟ ପ୍ରସ୍ତୁତ କରିବାକୁ ହେବ । ତମକୁ ଆମ ଧର୍ମରେ ଦୀକ୍ଷିତ ହେବାକୁ ପଡ଼ିବ । ଶିପ୍ରାର ବାପା ପ୍ରଫେସର ହେନକାର୍‌ଙ୍କର ମଧ୍ୟ ସେଇ ଇଚ୍ଛା । ଶୁଭେନ୍ଦୁ ଖ୍ରୀଷ୍ଟିଆନ୍ ଧର୍ମରେ ଦୀକ୍ଷିତ ହୋଇ ସାରିଲେ, ସେମାନେ ରେଜେଷ୍ଟ୍ରି ମ୍ୟାରେଜ୍ କଲେ ମଧ୍ୟ ତାଙ୍କର କିଛି ଆପତ୍ତି ନାହିଁ ।

ଏକ ନୈଷ୍ଠିକ ହିନ୍ଦୁ ପରିବାରରେ ଶୁଭେନ୍ଦୁର ଜନ୍ମ । ନିଜର ଆଭିଜାତ୍ୟକୁ ବଜାୟ ରଖି ରାଜକୀୟ ପରିବେଶ ଭିତରେ ସେ ବଢ଼ି ଆସିଛନ୍ତି—ବାପ ମା'ଙ୍କର ଏକମାତ୍ର ସନ୍ତାନ । ପୁତ୍ରର ସ୍ୱାଧୀନତା ଉପରେ ସେମାନେ କେବେ ହସ୍ତକ୍ଷେପ କରି ନାହାନ୍ତି । କାରଣ ସେ ଥିଲେ ଅତି ଗେଲ ବସରର । ଅତି ସନ୍ତର୍ପଣରେ ଶୁଭେନ୍ଦୁ ସେଦିନ ଏଇ ବିବାହ ପ୍ରସ୍ତାବକୁ ଉପସ୍ଥାପିତ କରିଥିଲେ ପିତାମାତାଙ୍କ ନିକଟରେ । କିନ୍ତୁ ପରିସ୍ଥିତି କ'ଣ ହେଲା !! ଶୁଭେନ୍ଦୁର ସମସ୍ତ କାର୍ଯ୍ୟକଳାପକୁ ବରଦାସ୍ତ କରିଯାଇପାରେ କିନ୍ତୁ ସେ ଯଦି ନିଜର ସମାଜ, ଆତ୍ମୀୟ, କୁଳ କୁଟୁମ୍ବଙ୍କୁ ପରିତ୍ୟାଗ କରି ଖ୍ରୀଷ୍ଟିଆନ୍ ହୁଏ, ତେବେ ସେମାନେ ସମାଜରେ ମୁହଁ ଦେଖାଇବା ପୂର୍ବରୁ ଏକକାଳୀନ ଆତ୍ମହତ୍ୟା କରିବେ ।

ଲୁହ ଲହୁ ଦେଇ ଦଶମାସ ଗର୍ଭ ଯନ୍ତ୍ରଣା ସହି ଯେଉଁ ମା'ର ସ୍ନେହାଶିଷ ଭିତରେ ଆଉ ଯେଉଁ ପିତାର ନିର୍ଭୀକ ବ୍ୟକ୍ତିତ୍ୱର ପ୍ରଭାବରେ ଶୁଭେନ୍ଦୁ ଆଜି ମଣିଷ ତାଙ୍କର ହୃଦୟରେ ସେ ଆଘାତ ଦେଇ ପାରିଲେ ନା ।

ଅଦ୍ଧନିଆ ବତାସରେ ଜୀବନ ରଙ୍ଗମଞ୍ଚର ପଟ୍ଟପରିବର୍ତ୍ତନ ହୋଇଯାଇଛି । ପ୍ରଫେସର ହେନକାର୍‌ଙ୍କ ଦିଲ୍ଲୀ ଟ୍ରାନ୍‌ସଫର୍‌ ପରେ ବହୁତ ଦିନରୁ ଶୁଭେନ୍ଦୁ ଆଉ ହୁଏତ ଶିପ୍ରାର ଖବର ରଖିନାହାନ୍ତି । ଶିପ୍ରା ଅନେକ ଚିଠି ଦେଇଛି । ସେଗୁଡ଼ିକ ବୋଧହୁଏ ଅକ୍ଷତ ଅବସ୍ଥାରେ ଡାଷ୍ଟବିନରେ ଆତ୍ମଗୋପନ କରିଥିବ ।

ଏବେବି ବିଗତ ଅତୀତର ସେଇ ତିକ୍ତ ସ୍ମୃତିକୁ ବେଦନାର ରଂଗଦେଇ ଚର୍ବଣ କରୁଥିଲେ ଶୁଭେନ୍ଦୁ ଏକ ଅହେତୁକ ପରିବେଶ ଭିତରେ । ଗୋଟିଏ ପୁରୁଷର ଯାହା କିଛି ପ୍ରାପ୍ୟ ସେ ସବୁ ଆଜି ଆଉ ଆଜି କାହିଁକି ଏତେ ନିଃସହାୟ ଭାବରେ ଡାକ୍ତର ଶୁଭେନ୍ଦୁ ନିଜକୁ ଅର୍ପଣ କରିଥିଲେ ଏଇ ନର୍ତ୍ତକୀ ଇଭାନ୍ ନିକଟରେ ?

ରାତି ଅନେକ ହେଲଣି – ଶୁଭେନ୍ଦୁଙ୍କ ଆଖିରେ ତନ୍ଦ୍ରା । ହୋଟେଲର ବୟ୍‌ଟି ଅସମୟରେ ଗୋଟିଏ ଟେଲିଗ୍ରାମ ଦେଇଗଲା— । ଶିପ୍ରା ଟେଲିଗ୍ରାମ୍ କରିଛି । ରାଜଧାନୀ ଏକ୍‌ସପ୍ରେସ୍‌ରେ ରାତି ଦୁଇଟାରେ ସେ ପାମ୍‌ବିଚ ହୋଟେଲରେ ଉପସ୍ଥିତ ହେବ । ଶିପ୍ରା ତାହେଲେ ସମସ୍ତ ଖବର ରଖିଚି ତାଙ୍କର ! କିନ୍ତୁ କାହିଁକି ? ତା'ହେଲେ କଣ' ଅତୀତର ସେଇ ନିର୍ବାପିତ ଦୀପକୁ ଆଖିର ଲୁହ ଦେଇ ପୁଣି ଆଲୋକିତ କରିବାକୁ ଧାଇଁ ଆସୁଚି ଶିପ୍ରା ?? ପ୍ରଣୟର ଶେଷ ସ୍ୱାକ୍ଷର ବହନ କରି ତା'ର ଜଠରେ ଯେଉଁ ନୂତନ ଆତ୍ମା ବିକାଶ ଲଭ କରିଥିବ ତା'ର ପରିଚୟ ଦେବା ପାଇଁ !! ସେ ତାହେଲେ ବିବାହିତା ? ତେବେ ତା'ର ସ୍ୱାମୀ··· ? ଡ୍ରାଇଭର୍ସ··· ? ଏକ୍‌ସପାଷ୍ଟାର୍ଡ଼··· ? ? ବାହାରର ଲନ୍‌ରେ କାର୍‌ ଶବ୍ଦ ! ଅଣନିଃଶ୍ୱାସୀ ହୋଇ ବାହାରେ କଲିଂ ବେଲ୍‌ଟି ଶବ୍ଦ କରୁଥିଲା— ।






## ● ଶ୍ରୀ ରବୀନ୍ଦ୍ରନାଥ ପ୍ରଧାନ

ତାଙ୍କ ସହ ମୋର ସେପରି ବିଶେଷ ପରିଚୟ ନଥିଲା ।

ଦୁଇଟି ପଥିକ ଯେପରି ଭିନ୍ନ ଲକ୍ଷ୍ୟ ନେଇ, କିଛି ସମୟ ପାଇଁ ଗୋଟିଏ ପଥରେ ଚାଲୁଥିଲା ବେଳେ ସେହି କିଛି ସମୟ ପାଇଁ ବନ୍ଧୁ ହୋଇପଡ଼ନ୍ତି ଏବଂ ସମୟ ଆସିଲେ ନିଜ ଲକ୍ଷ୍ୟ ଉଦ୍ଦେଶ୍ୟରେ ପୃଥକ ହୋଇ ଯାଆନ୍ତି, ଠିକ୍ ସେହିପରି ଅନେକ ଥର ଘରୁ ଏକ ସଙ୍ଗେ ଏକ ସମୟରେ ବାହାରି ବସ୍‌ରେ ବସିଛୁ, ଏବଂ ନିଜ ନିଜର କର୍ମ କ୍ଷେତ୍ରରେ ଓହ୍ଲାଇ ପଡ଼ିଛୁ । ଅନେକ ସେହି କଲୋନୀରୁ ଏକ ସଙ୍ଗେ ଘରୁ ବାହାରନ୍ତି, ଯେଉଁ କଲୋନୀରେ ମୁଁ ରୁହେ, ଏବଂ ଏକା ବସ୍‌ରେ ଯାତ୍ରା ଆରମ୍ଭ କରନ୍ତି । ତେଣୁ ସମସ୍ତଙ୍କୁ ମନେ ରଖିବାର ପ୍ରୟୋଜନ କେବେ ପଡ଼ିନି କିମ୍ବା ଚେଷ୍ଟା ମଧ୍ୟ କେବେ କରିନି ।

ତାଙ୍କ ସହ ସେହି ଦୃଷ୍ଟିରୁ କେବେ କଥାବାର୍ତ୍ତା ହୋଇ ନଥିଲା ।

ସରକାରୀ ଚାକିରିଆର ଜୀବନରେ ଛୁଟି ଖୁବ୍ କମ । ସକାଳରୁ ସଞ୍ଜ ଯାଏଁ ଏକ ବୃତ୍ତର ପରିଧିରେ ଘୂରି ଘୂରି, କ୍ଲାନ୍ତ ଶରୀରକୁ ନେଇ ସଞ୍ଜ ପରେ ଆଉ କୌଣସି ପ୍ରକାରର ମନୋରଞ୍ଜନ କରିହୁଏ ନାହିଁ । ଶରୀର ଚାହେଁ ବିଶ୍ରାମ । ମନତ ଜନ୍ମରୁ ଅମାନିଆ । ହାତ ଦୁଇଟି ଗଦାଗଦା ଫାଇଲକୁ ତନ୍ନ ତନ୍ନ କରି ପରୀକ୍ଷା କରିବା ପାଇଁ ଅଦରକାରୀ ସାବ୍ୟସ୍ତ ହେଲେ ଦିଆଯାଏ ଅବସର । କୋଡ଼ିଏ ପଚିଶି ବର୍ଷର ଅକ୍ଲାନ୍ତ ପରିଶ୍ରମର ଫଳ ମିଳେ କେତେ ଟଙ୍କା ପେନ୍‌ସନ ।

କେବଳ ପେନ୍‌ସନହିଁ ପ୍ରମାଣ କରିଦିଏ ଯେ ମନୁଷ୍ୟ ବୁଢ଼ା ହୋଇଗଲାଣି ।

ଯୁବକ ମନର ସ୍ୱପ୍ନ ସବୁ ଅତିଷ୍ଠିଆ ହୋଇ ପଳାୟନ କରନ୍ତି । ହୃଦୟରେ ଯେଉଁ ଟିକେ କୋମଳତା ଥାଏ, ଯେଉଁ କୋମଳତା ଏଇ ମଣିଷକୁ କବି, ଲେଖକ, ଭାବୁକ ଓ ଚିତ୍ରକାର କରି ଗଢ଼େ, ସେହି କୋମଳତାର ଚତୁର୍ଦ୍ଦିଗରେ ଏକ ଚଦର

ପର୍ଯ୍ୟନ୍ତ ବେଢ଼ିଯାଏ । ଶରୀରରୁ ଉଷ୍ଣତା ଦୂର ହୁଏ, ତେଣୁ ଚର୍ବିର ପର୍ଯ୍ୟନ୍ତ ନିର୍ଦ୍ୱନ୍ଦ୍ୱରେ ବଢ଼ିଚାଲେ ।

ପ୍ରତ୍ୟେକ ସରକାରୀ ଚାକିରୀଆ, ଶ୍ରେଷ୍ଠ ହେଉକି ବଡ଼ ହେଉ ଏହି ଦୃଷ୍ଟିରୁ ସମାନ । ପ୍ରତ୍ୟେକ ଏକା ଜନ୍ତାରେ ପଶିଥିବା ପଶୁପରି ।

ରବିବାର ଥିଲା । ରୁଟିନ ବନ୍ଧା ଜୀବନରେ ଛୁଟି, ଆନନ୍ଦ ଓ ମନୋରଞ୍ଜନର ସ୍ଥାନ ନାହିଁ । ସେ ଦିନ ଘରେ କେହି ନଥାନ୍ତି । ସୋମବାର ଦିନ ମଧ୍ୟ ଛୁଟିଥାଏ । ତେଣୁ ସକାଳୁ ସ୍ଥିର କରିଥାଏ ସିନେମା ଯିବାପାଇଁ ସନ୍ଧ୍ୟାରେ ।

ଅପରାହ୍ଣରେ ଖୁବ ଶୋଇଲି ଏବଂ ସନ୍ଧ୍ୟାରେ ଘରୁ ବାହାରିଲି । ଅଳ୍ପ ପଥ ଅତିକ୍ରମ କରିଛି, ସେ ଡାକିଲେ । ଚାଲି ଲକ୍ଷ୍ୟ କଲି । ସେ ଖୁବ ଜୋରରେ ହାତ ହଲାଇ ହଲାଇ ମୋ ଆଡ଼କୁ ମାଡ଼ି ଆସୁଥାନ୍ତି ।

ମୋ ନିକଟରେ ପହଞ୍ଚି ଧକ୍କା ମାରିଲାପରି ପ୍ରଶ୍ନ କଲେ, "କୁଆଡ଼େ ?"

ମୁଁ ଟିକେ ବିରକ୍ତ ହୋଇଥିଲେ ମଧ୍ୟ ଭଦ୍ରତା ଦୃଷ୍ଟିରୁ ବାଧ୍ୟ ହେଲି ଉତ୍ତର ଦେବାକୁ, ଏମିତି ଟିକେ ବୁଲିବୁଲି କରି ସିନେମା ଯିବା ପାଇଁ ଭାବିଛି ।"

ସେ ଘଡ଼ିକୁ ଲକ୍ଷ୍ୟକରି ଉଚ୍ଚସ୍ୱରରେ ହସିଉଠିଲେ । ମୁଁ ଖୁବ ବିରକ୍ତ ହୋଇଉଠିଲି । ଏପରି ହସର ମାନେ ? ଥରେ ଘଡ଼ିକୁ ଲକ୍ଷ୍ୟ କରନ୍ତୁ ତ, ସାଢ଼େ ଛଅ··· । ସିନେମା ହଲ ମାଇଲିଏ ବାଟ, ଫାଷ୍ଟ ଶୋ ଦେଖିପାରିବେ ତ ?" ପ୍ରକୃତରେ ତ···, ହସିଲି । ଥରେ ଥରେ ମନୁଷ୍ୟ ଅପ୍ରସ୍ତୁତ ହୋଇ ପଡ଼ିଲେ ମଧ୍ୟ ହସେ ।

"ବରଂ ସେକେଣ୍ଡ ଶୋ ପ୍ରୋଗ୍ରାମ କରନ୍ତୁ ··ଦୁହେଁ ଯିବା ।" ସେ କହିଲେ ।

ମୁଁ ସମ୍ମତିରେ ମୁଣ୍ଡ ହଲାଇଲି । ସେ ପକେଟରୁ ସିଗାରେଟ ପ୍ୟାକେଟ ବାହାର କଲେ । ମୋତେ ଗୋଟିଏ ଦେଇ ନିଜେ ଗୋଟିଏ ଓଠରେ ଲଗାଇ, ଲାଇଟର ଦ୍ୱାରା ଅଗ୍ନି ସଂଯୋଗ କରି କହିଲେ, "ଏମିତି କେତେ ସମୟ ଠିଆ ହେବା ?"

ତା' ପରେ ଆମେ ଚାଲିବା ଆରମ୍ଭ କଲୁ ।

ସନ୍ଧ୍ୟା ଅତର୍କିତ ଭାବେ ଆସି ନଥିବାରୁ, ସହରର ପ୍ରତ୍ୟେକ ନାନା ପ୍ରକାରର ସାଜସଜ୍ଜା ସହ ତାକୁ ଅଭ୍ୟର୍ଥନା ଜଣାଇଥିଲେ । ସଂଧ୍ୟା ଚାଲିଗଲାଣି, କିନ୍ତୁ କିଛିକ୍ଷଣ ପୂର୍ବେ ସେ ଏଇ ପଥ ଦେଇ ଅତିକ୍ରମ କରିଥିବାର ସୂଚନା ଏ ଯାଏଁ ରହିଛି ।

ଆମେ ଦୁହେଁ ନୀରବ ଥିଲୁ । ମୁଁ ପଥକଡ଼ର ସୁସଜ୍ଜିତ ଦୋକାନ ଦେଖୁଥାଏ । ହଠାତ୍ ସେ ମୌନତା ଭାଙ୍ଗିଲେ, ମୁଁ ତାଙ୍କୁ ଲକ୍ଷ୍ୟ କଲି ।

"ଦିନ ଆତ୍ମହତ୍ୟା କରିଛି, ଜାଣିଛନ୍ତି ।"

"ଦିନ !"

"ଆପଣଙ୍କ କ୍ୱାର୍ଟରରୁ ଛନୋଟି କାର୍ଟର ଗୁଡ଼ି, ଚତୁର୍ଥ କ୍ୱାର୍ଟରର ସେ ଯୁବକ, ବନବିହାରୀ ଦାସ ।"

ଓଃ !

ମନର ଧଳା ପଟାରେ କିଏ ଯେପରି ସେହି ଶାନ୍ତ, ନିରୀହ ଯୁବକଟିର ଚିତ୍ର କାଟିଦେଲା । ସର୍ବଦା ନୀରବ ଦେଖିଛି ତାଙ୍କୁ । କାହା ସହିତ ଦିନେ ବି କଥା କହିବାର ଦେଖିନାହିଁ ।

: "ବିଚ୍ଛୁଘର ବୁଢ଼ୀ ମା' ଏ ଖବର ଜାଣିଲେ··· ।"

କଥା ପୂରଣ ନକରି ସେ ଦୀର୍ଘ ନିଶ୍ୱାସ ତ୍ୟାଗ କଲେ । ମୁଁ ପ୍ରଶ୍ନ କଲି ।

: "କେବେକାର କଥା ?"

: "ଏଇ ଆଜି ସକାଳେ ତ··· । ଗତକାଲି ରାତିରେ ଦୁହେଁ ଏକ ସଙ୍ଗେ ବୁଲି ବୁଲି ଫେରିଥିଲୁ । ଖୁବ୍ ଶାନ୍ତ ଥିଲା । ଏପରି ଏକ ପଦକ୍ଷେପ ଯେ ନେବ, ତା' ଗମ୍ଭୀର ମୁଖରୁ କିଛି ଜଣା ପଡ଼ୁ ନଥିଲା । ଆଜି ସକାଳେ ପୋଲିସ ଆସିବାରୁ ଜାଣିଲି···।"

ତାଙ୍କ ସ୍ୱର ଥରି ଉଠିଥିଲା, ସେ ଯେପରି ବନର ସେହି ଗତ ରାତିର କଥା ଭାବୁଥିଲେ । ଅନ୍ଧାରରେ ମୁଁ ତାଙ୍କୁ ଲକ୍ଷ୍ୟ କଲି, ସେ ସମ୍ମୁଖକୁ ଲକ୍ଷ୍ୟ କରିଥାନ୍ତି । ମୁଁ ତାଙ୍କର ଭାବ ପ୍ରବଣତାରେ ବାଧା ଦେଲି ନାହିଁ । କହିଲି ।

: "ଯେତେହେଲେ ମା' ତ କିପରି ନିଜ ସନ୍ତାନର ମୃତ୍ୟୁ ସମ୍ବାଦ ଶୁଣି ଧୈର୍ଯ୍ୟ ଧରି ରହିପାରିବେ ?"

ସେ ନୀରବରେ ମୁଣ୍ଡ ହଲାଇଲେ । ଆମେ ଧୀରେ ଧୀରେ ଅନ୍ଧାର ଗଳି ପଛରେ ଛାଡ଼ି, ରାଜପଥରେ ପାଦ ଦେଲୁ । ସନ୍ଧ୍ୟାଟା ଏହିପରି ଯେ ବିତିବ, ତାହା ମୁଁ କେବେ ଚିନ୍ତା କରିନଥିଲି । ନୀରବ ରହି ପାଦକୁ ଥକାଇବାରମାନେ ମୁଁ ବୁଝି ପାରୁନଥିଲି, କଥା ଆରମ୍ଭ କରିବା ପାଇଁ ମୁଁ କହିଲି—

: "ମଣିଷ ଜୀବନରେ କଅଣ ଅଛି ? ପାଣି ଫୋଟକାଟି··· ।"

: "ଠିକ୍ କହିଲେ । ଏଇ ଦେଖୁନାହାନ୍ତି ଗତକାଲି ଠିକ୍ ଏହି ପଥରେ, ଏତିକିବେଳେ ଆପଣଙ୍କ ପରିବର୍ତ୍ତେ ସେ ବୁଲୁଥିଲା । କିନ୍ତୁ ଆଜି ତାର ଅସ୍ତିତ୍ୱ ମଧ୍ୟ ନାହିଁ ।"

ଯାହାହେଉ ସେ କିଛି କହିଲେ ଯଦିଓ ଏହି ବିଷୟରେ ଆଲୋଚନା କରିବାକୁ ମୁଁ ଆଗ୍ରହୀ ନଥିଲି, ତଥାପି ନୀରବତାକୁ ଭଙ୍ଗ କରି କହିଲି, "ତାଙ୍କ ସହ କେବେ କଥା ହୋଇନି, କିନ୍ତୁ ଦେଖିଛି ସର୍ବଦା ସେ କିଛି ନା କିଛି ଭାବୁଥାନ୍ତି । ହସିବା ତ ମୁଁ କେବେ ଦେଖିନି ।"

"ହୁଁଃ !" ସେ ଦୀର୍ଘଶ୍ୱାସ ତ୍ୟାଗ କଲେ, " ମୁଁ କଅଣ ଭାବେ ଜାଣନ୍ତି..., ତା' ଶରୀରର ଶିରା ପ୍ରଶିରାରେ ରକ୍ତ ସହ ଦୁଃଖ ଓ କଷ୍ଟ ଯେପରି ଜନ୍ମରୁ ମିଶି ଯାଇଥିଲା।"

ପୁନର୍ବାର କିଛି ନୀରବତା ଏବଂ କିଛି ପଦଚାଳନା । ହଠାତ୍ ଏକ ପ୍ରଶ୍ନ, "ଜାଣନ୍ତି ବିନ ଆତ୍ମହତ୍ୟା କାହିଁକି କଲା ? କାରଣଟା କଅଣ ଜାଣନ୍ତି ?" ମୁଁ ମୁଣ୍ଡ ହଲାଇ ମନା କଲି । ପରେ ସମ୍ମୁଖକୁ ଲକ୍ଷ୍ୟକରି ଅତ୍ୟନ୍ତ ଗମ୍ଭୀର ସ୍ୱରରେ ସେ ରହସ୍ୟ ଉଦ୍‌ଘାଟନ କଲେ, "ବିନି ଜାଣିପାରିଲା, ଦୁନିଆଁ ଯାହାକୁ ତାର ବାପା କହୁଛି, ସେ ତାର ବାପା ନୁହନ୍ତି।"

"ମାନେ !" ମୁଁ ଚମକି ଉଠିଲି।

: "ବିନ ତା' ମା'ର ଅବୈଧ ସନ୍ତାନ।"

"କିନ୍ତୁ !" ମୁଁ ଏତେ ସହଜରେ ଗ୍ରହଣ କରିନେଇ ପାରିଲି ନାହିଁ, ମୋତେ ବୋଧହେଲା, ଯେପରି ଆମେ ସମସ୍ତେ ଆମ ବାପା, ମା'ଙ୍କର ଅବୈଧ ସନ୍ତାନ । ତେଣୁ ଏକା ବିନର ନୁହେଁ ଆମ ସମସ୍ତଙ୍କର ଆତ୍ମହତ୍ୟା କରିବା ଉଚିତ ।

"ବିନ ସହ ମୋର ଦେଖା ପ୍ରଥମେ ହୋଇଥିଲା ଟ୍ରେନରେ।" ସେ ଯେପରି ଖୁବ ଦୂରରୁ କହୁଥାନ୍ତି । ବର୍ଷ ବର୍ଷ ତଳର ଅତୀତ ମଧ୍ୟରେ ପଶି ସ୍ମୃତିକୁ ଅଣ୍ଡାଳୁ ଥାନ୍ତି । "ସେତେବେଳେ ସେ ଏପରି ଗମ୍ଭୀର ନଥିଲା । ଆପଣଙ୍କ ପରି, ମୋ ପରି ମନଖୋଲି ହସୁଥିଲା, ଆନନ୍ଦରେ ଚିତ୍କାର କରୁଥିଲା।"

: "ତାପରେ ?"

: "ତାପରେ, ଆମେ ଦୁହେଁ ବନ୍ଧୁ ହୋଇଗଲୁ, କଲେଜ ଜୀବନ ବିଷୟରେ ମୋ ସହ ଯୁକ୍ତି କରେ। ତାଜା ହୋଇ କଲେଜରୁ ଫେରିଆଏ କି ନା।"

ସେ କଥା ବନ୍ଦକରି ସିଗାରେଟଟିକୁ ଫୋପାଡ଼ି ମୋତେ ଲକ୍ଷ୍ୟକରି ପ୍ରଶ୍ନକଲେ, "କେତେଟା ବାଜିଲା ?" ମୁଁ ଘଡ଼ି ଦେଖି ଉତ୍ତର ଦେଲି । ହଠାତ୍ କଥା ବନ୍ଦକରି ଦେଉଥିବାରୁ ମୋତେ ବ୍ୟସ୍ତ ଲାଗୁଥାଏ । ପରବର୍ତ୍ତୀ ଘଟଣାବଳୀ ଜାଣିବାପାଇଁ ମନରେ ଆଗ୍ରହ। କିନ୍ତୁ ସଂକୋଚ ଯୋଗୁଁ ପଚାରିପାରୁ ନଥାଏ । ସେ କହିଲେ, "ଏଥର ଏଇ ନିକଟରେ କେଉଁଠି ଖାଇନେବା..., କଅଣ କହୁଛନ୍ତି ?"

ସମ୍ମତି ପ୍ରଦାନ କଲି ଏବଂ ଦୁହେଁ ନିକଟସ୍ଥ ଏକ ହୋଟେଲ ମଧ୍ୟରେ ପ୍ରବେଶ କଲୁ। ସେ ମୋତେ ପ୍ରଶ୍ନକଲେ, "ଆପଣ ଡ୍ରିଙ୍କ କରନ୍ତି ?" ମୁଁ ମନା କଲି। "ତେବେ ଆଜି ଚେଷ୍ଟା କରନ୍ତୁ। ବିୟର ନିଅନ୍ତୁ, ଲାଇଟ ଡ୍ରିଙ୍କ ।"

ମୁଁ କିଛି କହିଲି ନାହିଁ । ସେ ନିଜ ପାଇଁ ରମ୍ ଓ ମୋ ପାଇଁ ବିୟରର

ଅର୍ଡ଼ର ଦେଲେ । ବେହେରାଙ୍କର ପ୍ରସ୍ଥାନ ପରେ ମୁଁ ନିଜକୁ ଆୟତ୍ତ କରି ନପାରି ପ୍ରଶ୍ନକଲି । "ତାପରେ ?"

: "ତାପରେ ଗତ ଦୁଇବର୍ଷ ଧରି ଆମ ମଧ୍ୟରେ ପତ୍ର ବ୍ୟବହାର ଚାଲେ । ସେ ଥାଏ ଅନ୍ୟ ସହରରେ ଓ ମୁଁ ଏଠାରେ । ପତ୍ରରେ ସେ ଅନେକ ବିଷୟ ଲେଖେ, ତା' ସହର ବିଷୟରେ, ନିଜ ବିଷୟରେ, ଚତୁର୍ଦ୍ଦିଗର ବାତାବରଣ ବିଷୟରେ, ଭବିଷ୍ୟତର ସ୍ୱପ୍ନ ବିଷୟରେ, ବିତିଲା ଅତୀତ ବିଷୟରେ ।"

ବେହେରାକୁ ଆସୁଥିବାର ଦେଖି ସେ ନୀରବ ହେଲେ । ବେହେରା ଆମ ଟେବୁଲ ଉପରେ ଏକ ରଙ୍ଗ ପାତ୍ରରେ, ଭିନ୍ନ ରଙ୍ଗର ଆଲକୋହଲ ରଖିଦେଲା । ଆମେ ଦୁହେଁ ସିଗାରେଟ ଲଗାଇ, ପାତ୍ର ଟେକି ଚିୟର୍ସ କହିଲୁ । ସେ କହିଲେ, "ପ୍ରଥମେ ଆମେ ପିଇବା ବିନି ଆତ୍ମାର ସଦ୍‌ଗତି ପାଇଁ ଏବଂ ଦ୍ୱିତୀୟରେ ଆମ ଆଜିର ଏ ବନ୍ଧୁତା ପାଇଁ ।"

ପାତ୍ର ଶୂନ୍ୟ ହେଲା ପର୍ଯ୍ୟନ୍ତ ସେ ନୀରବ ରହିଲେ । ଶୂନ୍ୟପାତ୍ରକୁ ଲକ୍ଷ୍ୟ କରି କହିଲେ, ଦୁଇବର୍ଷ ବିତିଗଲା । ତାପରେ ହଠାତ୍ ଚାରିମାସ ତଳେ, କୌଣସି ସମ୍ବାଦ ନଦେଇ, ଦିନେ ରାତିରେ ମୋ ନିକଟରେ ପହଞ୍ଚି, କହିଲା, " ମୋର ଟ୍ରାନସ୍‌ଫର ହୋଇଯାଇଛି ଏବଂ ଆସନ୍ତା କାଲି ଭୋର ଅଫିସରେ ଜଏନ୍ କରିବି । ସେଦିନ ମୁଁ ଅନୁଭବ କଲି, ତା'ର ପିଇଥିବାର । ସେ ଖୁବ ଡ୍ରିଙ୍କ କରିଥାଏ । କିନ୍ତୁ ତା'ର କଥାବାର୍ତ୍ତା ଅଙ୍ଗଭଙ୍ଗୀରୁ ଟିକେ ହେଲେ କିଛି ଜଣା ପଡୁ ନଥାଏ ।

: "ପ୍ରକୃତରେ ଆଶ୍ଚର୍ଯ୍ୟ ।"

: ଆଶ୍ଚର୍ଯ୍ୟ ମୁଁ ପରଦିନ ହୋଇଥିଲି । ସକାଳେ ମୁଁ ଅନୁଭବ କଲି, ଯେପରି ସେ ଦୁଇବର୍ଷ ମଧ୍ୟରେ ସମ୍ପୂର୍ଣ୍ଣ ବଦଳି ଯାଇଛି । ହସନାହିଁ, ପ୍ରଫୁଲ୍ଲତା ନାହିଁ, ଆଖିତଳେ କଳାଦାଗ । ଅନେକ ଥର ପ୍ରଶ୍ନ କରିଛି ତାର ଏପରି ଦୁର୍ଦ୍ଦଶାର କାରଣ ଜାଣିବା ପାଇଁ । ହସେ·· କେବଳ ହସେ । ମୋତେ କିନ୍ତୁ ଲାଗେ ଯେପରି ଏକ କଙ୍କାଳ ମୁଖ ମେଲି କରିଛି । କଙ୍କାଳର ମେଲା ମୁଖ ଦେଖି କେବେ କେହି ଅନୁମାନ କରିପାରିବେ ନାହିଁ ତାହା ହସ କି କାନ୍ଦ । ମୁଁ କିନ୍ତୁ ଠିକ୍ ବୁଝିପାରିଥିଲି, କିଛି ଗୋଟାଏ ଚିନ୍ତା ତାକୁ ଭିତରୁ ଭିତରୁ ଖାଇ ଚାଲିଛି ।"

ବେହେରା ଆସିଲା । ସେ କଥା ବନ୍ଦ କଲେ । ଦୁହେଁ ନୀରବରେ ଖାଇଲୁ । ଖାଇ ସାରିବା ପରେ ସେ ବିଲ୍ ପେମେଣ୍ଟ କଲେ । ମୁଁ ନିଜପକ୍ଷରୁ ଦେବାପାଇଁ ଅନେକ ଜୋର କଲି । କିନ୍ତୁ ସେ ମାନିଲେ ନାହିଁ । "ଆମ ବନ୍ଧୁତାର ପ୍ରଥମ ଦିନରେ ମୋତେ ହିଁ ପେମେଣ୍ଟ କରିବାକୁ ଦିଅନ୍ତୁ" କହି ସେ ପେମେଣ୍ଟ କଲେ । ତାପରେ ଆମେ ହୋଟେଲ ଛାଡ଼ି, ରାଜପଥରେ ପାଦଦେଲା ବେଳକୁ ରାତି ସାଢ଼େ ଆଠ ।

: ହଠାତ୍ ଦିନେ ଆସିଲା । ମୋ ନିକଟରେ ବସି କହିଲା, ଜାଣୁ ମୋର ବିବାହ ହେଉଛି ? ମୁଁ ହସିଲି, କହିଲି ଭଲ ହେଲା, ବାହା ହୋଇଯା' । ଜୀବନରେ ସୁଖ ପାଇବୁ, ଜୀବନରେ ତୋର ମଧୁରତା ଆସିଯିବ । ତୋର ଏ ଛନ୍ଦହୀନ ଜୀବନରେ ଛନ୍ଦର ଲହଡ଼ି ମାଡ଼ି ଆସିବ । ମୋ କଥାକୁ କାଟି ସେ ଚକାର କଲା,—ନାଁ ଏ ବିବାହ ହୋଇ ପାରିବ ନାହିଁ । ମୁଁ ବିବାହ କରିବ ନାହିଁ । ବିବାହ ଜୀବନ୍ତ ମନୁଷ୍ୟର ହୁଏ, ସତ୍ତା ଲାସ୍‌ର ନୁହେଁ । ତାପରେ ମୋ ହାତରେ ମଥାରଖି, କୋହ ସମ୍ବରଣ କରିନପାରି ସବୁ କହିଗଲା, ତାର ପ୍ରଥମ ପ୍ରେମର ଅସମାପ୍ତ, ଅସମ୍ପୂର୍ଣ୍ଣ କାହାଣୀ । କାହାଣୀରେ କିଛି ନୂତନତ୍ୱ ନଥିଲେ ମଧ, ବ୍ୟକ୍ତିର ବ୍ୟକ୍ତିତ୍ୱରେ ନୂତନତ୍ୱ ଥିଲା । ପ୍ରେମକୁ ଏକ ସତ୍ୟ ମାନି ନେଇଥିବା ନିର୍ଭୀକ ଯୁବକ ବନ ପ୍ରକୃତିରେ ଭାଙ୍ଗି ପଡ଼ିଥିଲା । ଅନେକ ସାନ୍ତ୍ୱନା ଦେଲି । ଅତୀତକୁ ଭୁଲି, ବର୍ତ୍ତମାନକୁ ଚିହ୍ନି, ଭବିଷ୍ୟତ ପାଇଁ ଚିନ୍ତା କରିବାକୁ ଉପଦେଶ ଦେଲି । ସେ ବୁଝିଲା କି ନାହିଁ ଜାଣିନି । କାରଣ ଦୁଇଦିନ ପରେ ହଠାତ୍ ଅଫିସରୁ ଛୁଟିନେଇ କୁଆଡେ ଚାଲିଗଲା ।''

ମୋ ଚତୁର୍ଦ୍ଦିଗରେ ସହରର କୋଳାହଳ ଥିଲେ ମଧ, ମୁଁ ଯେପରି ଏକା । ଏବଂ ମୋ ଚତୁର୍ଦ୍ଦିଗରେ, ବନର ଆତ୍ମା ଓ ମୋ ନୂତନବନ୍ଧୁଙ୍କ ସ୍ୱର ଯେପରି ମିଶିଯାଇ ନିଜକୁ ଏକ ଜାଲ ପରି ବିଛେଇ ଦେଉଛି । ମୁଁ ଧିରେ ଧିରେ ସେହି ଜାଲରେ ବାନ୍ଧିହୋଇ ଯାଉଛି, ନିସ୍ତାର ପାଇବାକୁ ଉପାୟ ନାହିଁ ।

: ତାପରେ ?

: ତାପରେ କିଛିଦିନ ବିତିଗଲା, ତା ନିକଟରୁ ଖଣ୍ଡେ ଚିଠି ପାଇଲି, ଗାଁରୁ ଲେଖିଥାଏ —'ଜାଣି ଖୁସୀ ନିଶ୍ଚୟ ହେବୁ ଯେ ଶେଷରେ ମୋର ବିବାହ ହେଉଛି । ମା'ର ଇଚ୍ଛାକୁ ଭାଙ୍ଗି ପାରିବାର କ୍ଷମତା ମୋ ନିକଟରେ ନାହିଁ । ସେଇ ମୋର ସବୁ କେବଳ ତାରି ପାଇଁ ମୋତେ ବିବାହ କରିବାକୁ ପଡ଼ୁଛି ।' ଚିଠି ପାଇବାର ଦୁଇଦିନ ପରେ ଝଡ଼ ପରି ମୋ ନିକଟରେ ପହଞ୍ଚିଲା । ଆଶ୍ଚର୍ଯ୍ୟ ହେଲି । ମୋ ପ୍ରଶ୍ନର ଉତ୍ତରରେ କହିଲା—'ନାଁ ବିବାହ ହେଲନାହିଁ । ମୁଁ ବିବାହ ଯୋଗ୍ୟ ନୁହେଁ । ଅନେକ ଚେଷ୍ଟା କରିଛି ତା' ମନରେ ଛପିରହିଥିବା ରହସ୍ୟକୁ ବାହାର କରି ତାକୁ ଟିକେ ଆରାମ ଦେବାପାଇଁ । କିନ୍ତୁ ପାରିନାହିଁ । ଏହା ପରଠାରୁ ସେ ସବଦା, ସବୁବେଳେ ନିଜ ରୁମରେ ବସି ପିଏ, ଏତେ ପିଏ ଯେ ମୋତେ ଭୟ ଲାଗେ । ମୁଁ କୁହେ—ଆରେ ଏତେ ପିଇନା ମରିଯିବୁ । ଉତ୍ତରରେ ହସେ ଏବଂ କୁହେ—ମରିଗଲେ ଭଲ ହୁଅନ୍ତା, ଶାନ୍ତି ପାଇ ପାରନ୍ତି । ଦିନେ ମନକୁମନ କହିଲା—କହି ପାରିବୁ । ସ୍ୱାମୀର ମୁଖ ନଦେଖି, ତା'ର ସ୍ପର୍ଶ ନ ପାଇ ବିଧବା ହୋଇଥିବା ସ୍ତ୍ରୀ, ବିବାହର ଦୁଇମାସ ପରେ ଯେଉଁ ସନ୍ତାନ ଜନ୍ମ କରେ, ତାକୁ ସମାଜ କଅଣ କୁହେ ? ମୁଁ କହିଲି ଜାରଜ ବା ଅବୈଧ । ହସି ଉଠିଲା ସେ । ହସି ହସି କାଶିବାକୁ ଲାଗିଲା ଏବଂ କହିଲା—

ସେପରି ଅବୈଧ ସନ୍ତାନ ଯେତେବେଳେ ଯୁବକ ହୁଅନ୍ତି, ସେତେବେଳେ ନିଜ ପିତାର ନାଁ ନ ଜାଣି ଆକାଶରୁ ଖସି ପଡ଼ିଥିବା ତାରା ପରି, ଆକାଶ ଓ ଧରା ମଝିରେ ଲଟକି ରହନ୍ତି ଚିରକାଳ ଏବଂ ସେମାନଙ୍କ ସହ କୌଣସି ଭଦ୍ରବ୍ୟକ୍ତି ନିଜ କନ୍ୟାକୁ ବିବାହ ଦେବା ପାଇଁ ରାଜିହୁଅନ୍ତି ନାହିଁ । ମୋ ବିବାହ କାହିଁକି ହୋଇପାରିଲା ନାହିଁ ପ୍ରଶ୍ନ କରୁଥିଲୁ ନା ? କଅଣ କିଛି ବୁଝିପାରିଲୁ ନାହିଁ ? ମୁଁ କିନ୍ତୁ ସବୁ ବୁଝିପାରିଥିଲି । ତା' ଚକ୍ଷୁର ଅଶ୍ରୁ ମୋତେ ସବୁ ବୁଝେଇ ଦେଇଥିଲା ।''

ସିନେମା ହଲ ନିକଟରେ ଆମେ ପହଞ୍ଚି ସାରିଥିଲୁ । ସିନେମାର ବଡ଼ ପୋଷ୍ଟରରେ ମୋତେ ଲାଗିଲା ଯେପରି ବିନ ଠିଆ ହୋଇଛି, ନିକଟରେ ତା ଚକ୍ଷୁହୀନା ମା' ଓ ଦୂରରେ ଅନେକ ଜନଗହଳି, ଯେଉଁମାନେ ସମାଜ ରୂପେ ଖ୍ୟାତ । ସେମାନେ ଅଙ୍ଗୁଳି ଉଠାଇ ଯେପରି କହୁଛନ୍ତି, ଏଇ ଦେଖ ଜାରଜ ସନ୍ତାନ·········ଏଇ ଦେଖ ! ମୋ କାନ ନିକଟରେ ଯେପରି ଅନେକ ଏକ ସ୍ୱରରେ ଚିତ୍କାର କରୁଛନ୍ତି—ଜାରଜ !·········ଜାରଜ !!······ଜାରଜ !!!···

ମୁଁ ବ୍ୟସ୍ତହୋଇ ତାଙ୍କୁ ଲକ୍ଷ୍ୟ କରୁଛି । ସେ ଶୂନ୍ୟ ଚକ୍ଷୁରେ କାଉଣ୍ଟର ନିକଟ ଜନଗହଳିକୁ ଲକ୍ଷ୍ୟ କରିଥାନ୍ତି । ଦୀର୍ଘ ନିଶ୍ୱାସ ଛାଡ଼ି କହିଲେ, ''ଏଇଟା ଛନଦନ ତଳର କଥା, ତାପରେ ମୋ ସହ ବେଶ ଆରାମରେ ବୁଲିଲା । ସେ ବୋଧହୁଏ ଭବିଷ୍ୟତର ପଦକ୍ଷେପ ନିଶ୍ଚିତ କରି ନେଇଥିଲା । ମୁଁ ଯଦି ଟିକିଏ ଜାଣି ପାରିଥାନ୍ତି······।''

ତାଙ୍କ କଣ୍ଠରେ ଅତୀତର ବନ୍ଧୁଙ୍କ ପାଇଁ ଅବଶୋଷ, ସତେ ଯେପରି ଜାଣିପାରିଥିଲେ, ସମସ୍ତଙ୍କ ଚକ୍ରକୁ ଅଟକେଇ ଦେଇ ପାରିଥାନ୍ତେ । ବିନ ମରିଗଲା··· ଭଲ ହେଲା । ମନୁଷ୍ୟ ହୋଇ ମନୁଷ୍ୟ ନିକଟରୁ ଘୃଣା, ହତାଦର ପାଇବା ଅପେକ୍ଷା ଯାହା ସେ କରିଛି ଭଲ କରିଛି । ସେ ପ୍ରଶଂସାର ପାତ୍ର । ଆମେ ଭୀରୁ···ଏବଂ ଭୀରୁମାନେ ମୃତ୍ୟୁକୁ ଭୟ କରନ୍ତି ।

''ଗତ ରାତିରେ କେତେ କଥା କହିଥିଲା, ଯଦି ନିଜର ନିଶ୍ଚିତ କଥା ଭୂଲବଶତଃ ବାହାରି ପଡ଼ିଥାନ୍ତା ।''

ସେ ନିଜ କୋହକୁ ଲୁଚାଇବା ପାଇଁ ଚେଷ୍ଟା କଲେ । ମୁଁ କହିଲି—

: ''ଛାଡ଼ନ୍ତୁ, ଗତ କଥା ଭାବି ଲାଭ କଅଣ ? ସିଏ ତ ମୁକ୍ତି ପାଇଗଲା ।''

ସେ ପ୍ରତିବାଦ କଲେ, ''ବିନ ସିନା ମୁକ୍ତି ପାଇଗଲା । କିନ୍ତୁ ତାର ବୃଦ୍ଧା ଚକ୍ଷୁହୀନା ମା'···ସେ କଅଣ କରିବେ ? କିଏ ଅଛି ତାଙ୍କର ସାହା ଭରସା ? କିପରି କାହା ଆଶ୍ରୟରେ ସେ ବଞ୍ଚିବେ ? ସିଏ ତ ଆଉ ଅନ୍ୟାୟ କରି ନାହାନ୍ତି ବିନ ପାଇଁ କେବେ । ପୁରୁଷ ସର୍ବଦା ନାରୀ ପ୍ରତି ଅନ୍ୟାୟ କରି ଆସିଛି । ଆମର ଏ ସମାଜ ନାରୀକୁ ତା'ର ଉପଯୁକ୍ତ ସ୍ଥାନ ଦେଇ ପାରିନାହିଁ । ନାରୀର ମର୍ଯ୍ୟାଦା କରିପାରି

ନାହିଁ । ସମସ୍ତେ ତାଙ୍କୁ କଷ୍ଟ ଦେଇଛନ୍ତି । ସବୁ କଷ୍ଟ ସେ ସହିଛନ୍ତି । ଯୌବନରେ ଯୁବକ ସାଥି ଅଜଣା ପଥରେ ଛାଡ଼ି ନିଜ ପଥ ଦେଖିଲେ । ଆଘାତ ପାଇ ଅବୈଧ ସନ୍ତାନକୁ ଛାତିରେ ଲଗାଇ, ନିଜ ସ୍ୱାମୀ, ଗାଁ ତ୍ୟାଗ କରି ଅନ୍ୟ ଗାଁରେ ପରିଶ୍ରମ କରି ପୁଅକୁ ପାଠ ପଢ଼େଇବା ପାଇଁ ଚକ୍ଷୁ ହରାଇଲେ । ଏଇଟା କଅଣ ସେ ଅପରାଧ କଲେ ? ତାଙ୍କର ଭୁଲ କଅଣ ? ହୁଏତ ଆଶା କରିଥିଲେ, ଦିନେ ଏଇ ବନ ତାଙ୍କ ଚକ୍ଷୁରେ ଆଲୋକ ଦେବ···କିନ୍ତୁ··· ।"

ମୁଁ ନୀରବ । ଯୁକ୍ତିରେ ହାରିଯାଇଛି । ପ୍ରକୃତରେ ବୃଦ୍ଧା ମା' ତାର କପରି ବଞ୍ଚିବେ ? ସେ ମଧ୍ୟ ଯଦି ଏପରି ମରି ଯାଇପାରନ୍ତେ, ତେବେ ହୁଏତ··· ।

ସିନେମା ଆରମ୍ଭ ହେବାର ତୃତୀୟ ଓ ଶେଷ ଘଣ୍ଟି ବାଜିଲା । ମୋତେ ଲାଗିଲା ଯେପରି ମୃତ୍ୟୁ ନିଜର ଘଣ୍ଟି ବଜାଇ, ବନର ବୃଦ୍ଧା ମା'ଙ୍କୁ ନେବାକୁ ଆସିଛି । ଶାନ୍ତ ଲାଗିଲା ଯାହାହେଉ ମୃତ୍ୟୁ ମଧ୍ୟ ଦୟାଳୁ ।

"ଟିକେଟ ଆଣୁଛି ।" ତାଙ୍କ ସ୍ୱର ଶୁଭିଲା ।

ମୋତେ ଲାଗିଲା, ଯେପରି ସେ ମୋତେ ମୃତ୍ୟୁର ଅନ୍ଧକାର ମଧ୍ୟକୁ ଟାଣି ନେବାକୁ ଇଚ୍ଛୁକ ।

: "ନା···ଇଚ୍ଛା ହେଉନି, ଚାଲନ୍ତୁ ଫେରିବା ।"

ସିନେମା ବୋଧହୁଏ ଆରମ୍ଭ ହୋଇଯିବଣି । କିନ୍ତୁ ଆମେ ଧୀର ପଦ-କ୍ଷେପରେ ଫେରୁଛୁ । କାହିଁକି କେଜାଣି ମୋତେ ଖୁବ୍ କ୍ଳାନ୍ତ ଅନୁଭବ ହେଉଛି ।



# ଦୁର୍ଯୋଗ



## ଶ୍ରୀ ପ୍ରିୟବ୍ରତ ଦାସ

---

ସବୁ ଦୁର୍ଯୋଗ ଭିତରେ ସୁଯୋଗର ସୂଚନା ଥାଏ ବୋଲି ପଟ୍ଟନାୟକ ସାହେବ ବିଶ୍ୱାସ କରନ୍ତି । ଶାନ୍ତ ନିସ୍ତରଙ୍ଗ ଜୀବନରେ ହଠାତ୍ ଝଡ଼ ଉଠିଲା, ବିପଦର କଳାମେଘ ଘୋଟି ଆସିଲା । ନିମିଷକ ଭିତରେ ସବୁ ଲଣ୍ଡଭଣ୍ଡ ହୋଇଗଲା । ଏଇତ ମଣିଷ ଜୀବନର ଦୁର୍ଯୋଗ । ସେଇ ଦୁର୍ଯୋଗ ବେଳେ ଧୈର୍ଯ୍ୟ ଆଉ ସାହାସ ରଖିବା କଥା ସମସ୍ତେ ଭୁଲିଯାନ୍ତି । କିନ୍ତୁ ପଟ୍ଟନାୟକ ସାହେବ ସବୁ ଦୁର୍ଯୋଗକୁ ଗୋଟିଏ ଶୁଭଙ୍କର ଭବିଷ୍ୟତର ସୂଚନା ଭାବି ବେଶ୍ ଧୈର୍ଯ୍ୟର ସହ ତାର ମୁକାବିଲା କରନ୍ତି । ସେଇଠି ତାଙ୍କ ଭିତରେ ଆଉ ଆମ ଭିତରେ ଫରକ । ସେଥିପାଇଁ ବୋଧହୁଏ ସବା ତଳପାହାଚରୁ ଜୀବନ ଆରମ୍ଭ କରି ଆଜି ସେ ଉପର ମହଲରେ ତାଙ୍କ ନିଜପାଇଁ ବେଶ ଆରାମପ୍ରଦ ଜାଗା ଠିକ କରି ପାରିଛନ୍ତି । ଯାହାକୁଇ ବୋଧହୁଏ ଦୂରଦୃଷ୍ଟି କହନ୍ତି । ସେଇଁ ଦୂରଦୃଷ୍ଟିକି ସବୁ କୃତିତ୍ୱ ମୂଳରେ ।

ହଁ ପଟ୍ଟନାୟକ ସାହେବ କୃତୀ ମଣିଷ । ପଟ୍ଟନାୟକ ସାହେବ ମାନେ ଆମ ବାଲେଶ୍ୱରର ପ୍ରାଣକୃଷ୍ଣ ପଟ୍ଟନାୟକ । ଯାହାଙ୍କୁ ଓଡ଼ିଶାରେ ସମସ୍ତେ ପି. କେ. ପଟ୍ଟନାୟକ ବୋଲି ଜାଣନ୍ତି । ତାଙ୍କ ସଙ୍ଗେ ମୋର ମାନେ ଆମ ପରିବାରର ଅନେକ ଦିନର ପରିଚୟ ଓ ଘନିଷ୍ଠତା ; ତାଙ୍କ ସହ ଆମର ଆତ୍ମୀୟତା ନ ଥିଲା । ମୁଁ ତାଙ୍କୁ ପଟ୍ଟନାୟକ ସାହେବ ବୋଲି ଡାକୁଥିଲେ ମଧ୍ୟ ତାଙ୍କ ସ୍ତ୍ରୀଙ୍କୁ ନୂଆବୋଉ ବୋଲି ଡାକୁଥିଲି । କିନ୍ତୁ ମୋର ବୟସ ବୋଧହୁଏ ତାଙ୍କର ପୁଅଝିଅଙ୍କ ବୟସ ଥିବାରୁ ତାଙ୍କ ପିଲାମାନେ ମୋତେ ଦାଦା ନଡାକି ଭାଇ ବୋଲି ଡାକୁଥିଲେ । ଆତ୍ମୀୟତା ନଥାଇ ମଧ୍ୟ ମୁଁ ତାଙ୍କ ନିକଟ ଆତ୍ମୀୟ ଥିଲି । ଆଉ ଥିଲି ପରିବାରର ସମସ୍ତଙ୍କର ବନ୍ଧୁ ।

ପଟ୍ଟନାୟକ ସାହେବ ବେଶ ରସିକ ଓ ଗପୁଡ଼ି ମଣିଷ । ତାଙ୍କର ଅବସର ସମୟଟା ଖାଲି ଗପିବାରେ କଟେ । ପାଖରେ ଯାହାକୁ ପାଇଲେ ସେ ଯେ କୌଣସି ବିଷୟରେ ଗପ କରନ୍ତି । ଶ୍ରୋତାର ମତାମତକୁ ଅପେକ୍ଷା ନକରି ଅନେକଟା ଆତ୍ମଗତ ଭାବେ ।

ପଟ୍ଟନାୟକ ସାହେବ କହନ୍ତି "ବୁଝିଲୁ ବନ୍ଧୁ, ଜୀବନରେ ଦୁର୍ଯୋଗ ବୋଲି କିଛି ନାହିଁ । ତୁମେ ଯାହାକୁ ଭାବୁଥିବ ଦୁର୍ଯୋଗ ଦୁଃ-ସମୟ ସେଇ ତୁମ

ଜୀବନରେ ସୁଯୋଗ ଆଉ ଗ୍ରହନ୍ତି ଆଣିଦେବ । ଏଇ ମୋ କଥା ଧର । ମୋର ଆଜ ଯେଉଁ ପୋଜସନ୍ ଦେଖୁଚୁ ସେ ସବୁତ ମୁଁ ପାଇଚ ଗୋଟାଏ ବଡ଼ ଦୁର୍ଯୋଗ ଭିତରେ ।"

ତାଙ୍କର ଏ ଦୁର୍ଯୋଗ ଭିତରେ ସୁଯୋଗ ପ୍ରାପ୍ତିର ଗପ ମୁଁ ଅନେକ ଥର ଶୁଣିଚ । ତାଙ୍କର ପରିଚିତ ସମସ୍ତେ ଶୁଣିଥିବେ । ତାଙ୍କ ପ୍ରଥମ ଜୀବନରେ ଯେଉଁ ଦୁର୍ଯୋଗର ଘନଘଟା ଆସିଥିଲା, ତାକୁ ଯଦି ସେ ଦୁର୍ଯୋଗ ଭାବି ଭାଙ୍ଗି ପଡ଼ିଥାନ୍ତେ ତେବେ କଣ ସେ ବଡ଼ହୋଇ ପାରିଥାନ୍ତେ । ତାଙ୍କ ତୁଳନାରେ ଅନେକ ଯୋଗ୍ୟ, ଅନେକ ଗୁଣବନ୍ତ ଶାନ୍ତ ନୂଆବୋଉଙ୍କୁ ପାଇ ପାରିଥାନ୍ତେ । ଉନ୍ନତିର ପ୍ରଥମ ସୋପାନ ସବ୍‌ଡେପୁଟି ଚାକିରି । ଆପଣ ଅବିଶ୍ୱାସ କରିପାରନ୍ତି ? କିନ୍ତୁ ଏ କଥା ସମ୍ଭବ ହୋଇଛି ତାଙ୍କ ଜୀବନରେ ।

ପଟ୍ଟନାୟକ ସାହେବ ପାଠପଢ଼ାରେ କୃତୀ ନଥିଲେ । କିନ୍ତୁ ଚେହେରାଟି ଦେବଦୁର୍ଲଭ ଥିଲା । ଖେଳ କସରତରେ ଥିଲେ ପାରଙ୍ଗମ ଓ ଇଂରାଜୀ କହି ପାରୁଥିଲେ ଭଲ । ଏଇ ସବୁ ଗୁଣ ଯୋଗୁ ଝିଅମାନେ ପ୍ରେମରେ ପଡ଼ିପାରନ୍ତି କିନ୍ତୁ ଚାକିରି ମିଳେନା । ସେଆ ହୋଇଥିଲା । ତେଣୁ ସାଧାରଣ ଭାବେ ବି. ଏ. ପାଶ୍ କରି ପ୍ରାଣକୃଷ୍ଣ ପଟ୍ଟନାୟକ ବହୁ ସାଧ୍ୟ ସାଧନା ପରେ ସେକ୍ରେଟେରିଏଟ୍‌ରେ ଏଲ୍. ଡ଼ି. ଚାକିରି ପାଇଥିଲେ । ତାଙ୍କ ପ୍ରେମରେ ପଡ଼ିଥିଲା ଜଣେ ସ୍ୱନାମଧନ୍ୟ ରାୟବାହାଦୂର ଜମିଦାରଙ୍କ ଏମ୍. ଏ. ପାଶ କରି ସୁନ୍ଦରୀ ଝିଅ । ସେଇ ଝିଅଟିର ଅବୁଝାପଣିଆ ଡାକିଆଣିଲା ପ୍ରାଣକୃଷ୍ଣଙ୍କ ଜୀବନରେ ଏକ ବଡ଼ ଦୁର୍ଯୋଗର ସୂଚନା । ପ୍ରବଳ ପରାକ୍ରାନ୍ତ ରାୟବାହାଦୂରଙ୍କ ହୁଙ୍କାର ଓ ପ୍ରତିହିଂସା ସ୍ପୃହା ଆଉ ପ୍ରେମାସ୍ପଦ । ତରୁଣୀର ଆତ୍ମହତ୍ୟା ଧମକ ଭିତରେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ ସେ । କିନ୍ତୁ ଆଶା ନ ଛାଡ଼ି ଖୋଜିଲେ ଉପାୟ । ପରାକ୍ରାନ୍ତ ଜମିଦାରଙ୍କୁ ପ୍ରତିରୋଧ କରି ପ୍ରେମାସ୍ପଦକୁ ଆପଣାର କରିବାର ଉପାୟ ।

ଦିନେ କୁହା ନାହିଁ ବୋଲା ନାହିଁ କବାଟ ଖୋଲି ଧଡ଼ କରି ପଶିଗଲେ ସେକ୍ରେଟେରିଙ୍କ ରୁମ୍‌କୁ । ସେତେବେଳେ ତାଙ୍କ ବିଭାଗର ସେକ୍ରେଟେରି ଡବ୍ଲ୍ୟୁ, ଡ଼େଭିସ୍, ଆଇ. ସି. ଏସ୍. । ବ୍ୟାଚେଲର ଓ ଖାଣ୍ଟି ବିଲାତି ସାହେବ । ମଦ ପିଏ ବହୁତ, କାମ କରେ ବହୁତ କିନ୍ତୁ କଥା କହେ ଅଳ୍ପ । ତେଣୁ ସାହେବଙ୍କୁ ସମସ୍ତଙ୍କର ଡର । କିନ୍ତୁ ତରୁଣ ପଟ୍ଟନାୟକ ଯାଇ ଛିଡ଼ାହେଲେ ସାହେବଙ୍କ ଟେବୁଲ ଆଗରେ ।

ଫାଇଲ ଉପରୁ ଆଖିତୋଳି ସାହେବ ପଚାରିଲେ । 'କଣ ଦରକାର' ? ଛେପ ଢୋକି ପଟ୍ଟନାୟକ କହିଲେ 'ମୁଁ ବିଭା ହେବି ସାର୍ ।'

'କଣ ଛୁଟିଦରକାର ?'

'ନା ?'

ତେବେ ? ସାହେବଙ୍କ କୁଞ୍ଚିତ କପାଳ ଆହୁରି କୁଞ୍ଚିତ ହୋଇଗଲା । ତା ପରେ କୌତୁକର ଛୁଆଁ ଲାଗିଲା ଦୁଇଟି ଧୂସର ଆଖିରେ । ସାହେବ ବେଶ ଗମ୍ଭୀର ଭାବେ କହିଲେ 'ଓ୍ୱାଣ୍ଟ ଏ ବ୍ରାଇଡ ? ମୁଁ ଶୁଣିଛି ତୁମ ସୋସାଇଟିରେ ମ୍ୟାରେଜ ସବୁ ଘଟକମାନେ ସ୍ଥିର କରନ୍ତି । କିନ୍ତୁ ମୁଁ ତ ଘଟକ ନୁହେଁ । ତେବେ ଷ୍ଟେଟସ୍ମ୍ୟାନର ପରସ୍ପୋଲ କଲମରେ ଗୋଟିଏ ଏଡ଼୍ଭର୍ଟାଇଜମେଣ୍ଟ ଦେବାପାଇଁ ମୁଁ ତୁମକୁ ପରାମର୍ଶ ଦେଇପାରେ ।

ପଟ୍ଟନାୟକଙ୍କ ଆଗରେ ଜୀବନ ମରଣ ସମସ୍ୟା । ପରାକାନ୍ତ ଜମିଦାର ଷଡ଼ଯନ୍ତ୍ର କରି ପୋଲିସକୁ ଧରାଧରି କରିବାରେ ଲାଗିଚନ୍ତି । ପଟ୍ଟନାୟକଙ୍କୁ ଗୋଟାଏ ସନ୍ତ୍ରାସବାଦୀ କ୍ରିମିନାଲ ବୋଲି କେସ କରି ଯେପରି ହେଉ ତାଙ୍କୁ ଚାକିରୀରୁ ବାହାର କରି ଜେଲରେ ପୂରେଇବେ । କିନ୍ତୁ ତାଙ୍କୁ ଯେପରି ହେଉ ଚାକିରୀ ରଖି ଉନ୍ନତି କରିବାକୁ ହେବ । ସେତିକି ତାଙ୍କର ପ୍ରାର୍ଥନା । ଏଣେ ସାହେବ ମଜା କରୁଚି ।

ପଟ୍ଟନାୟକ ସବୁ ସାହାସ ଠୁଳ କରି କହିଲେ 'ସାର୍ ମୋ ବିଭାଘର ମୁଁ ଠିକ୍ କରିଚି । ସୋସାଇଟି ବିରୁଦ୍ଧରେ ରିଭଲ୍ୟୁସନ କରି ମୁଁ ଇଣ୍ଟରକାଷ୍ଟ ମ୍ୟାରେଜ କରୁଚି ।

ସାହେବ ଏଥର ସିଧା ହୋଇ ବସିଲେ—'ବାଃ ଭେରିଗୁଡ଼୍ । ତମେ ସବୁ ରିଭଲ୍ୟୁସନ ନକଲେ ଇଣ୍ଡିଆରୁ କାଷ୍ଟ ସିଷ୍ଟମ୍ ଯିବନି । ଇଣ୍ଡିଆର ଉନ୍ନତି ହେବନି । ବେଶ ବେଶ ତୁମକୁ ମୋର ଶୁଭେଚ୍ଛା ।

'କିନ୍ତୁ ସାର୍—ପଟ୍ଟନାୟକ ଏଥର ବ୍ୟସ୍ତ ହୋଇ କହିଲେ, ମୁଁ ଏଲ. ଡ଼ି. ଆସିଷ୍ଟାଣ୍ଟ । ଦରମା ବହୁତ କମ୍ କେମିତି ବିଭା ହେବ ? ମୋର ଭାବିପତ୍ନୀ ଅପ୍ଟୁଡେଟ୍ ଗାର୍ଲ ଏମ୍. ଏ. ପାଶ କରିଚି ।

ସାହେବ କପାଳକୁ କୁଞ୍ଚିତ କରି ଉପରକୁ ଚାହିଁଲେ । ଟିକିଏ ଭାବିଲେ । ଆଚ୍ଛା ପଟ୍ଟନାୟକ ମୁଁ ତୁମର ପ୍ରୋମୋସନ କରିଦେବି । ଟିକିଏ ଅପେକ୍ଷା କର । ତାପରେ ମ୍ୟାରେଜ କରିବ । ମୁ ସବ୍-ଡେ଼ପୁଟି ନୋମିନେସନରେ ତୁମ ନାମ ପଠଉଚି ।

ପଟ୍ଟନାୟକ ଫେରିଲେ । ଭାବିଲେ ଖିଆଲି ସାହେବଙ୍କର ଏ ଏକ ଖିଆଲ । କିନ୍ତୁ ସତକୁ ସତ ଜଏଣ୍ଟ ସର୍ଭିସ କମିସନରୁ ଇଣ୍ଟରଭ୍ୟୁକୁ ଡାକରା ପାଇଲେ ସେ; ତଥାପି ଆଶା ନ ଥାଏ । କାରଣ ତାଙ୍କ ଛାତ୍ର ଜୀବନ ଉଜ୍ଜ୍ୱଳ ନୁହେଁ । ଚାକିରୀରେ ସେ ବହୁତ ନୂତନତା ଦେଖିଲେ । ଇଣ୍ଟରଭ୍ୟୁ ତାଲିକାର ସବାଶେଷରେ ତାଙ୍କ ନାମ । ତେଣୁ ଇଣ୍ଟରଭ୍ୟୁ ଦିନ ଧାର କରା ସୁଟ ଟାଇ ପିନ୍ଧି ନିରାଶ ହୃଦୟରେ କମିଶନ ଅଫିସ ବାରଣ୍ଡାରେ ବସିଥାନ୍ତି । ବହୁ ପ୍ରତୀକ୍ଷାର ଅବସାନ ପରେ ତାଙ୍କର ଡାକରା ଆସିଲା । ଭିତରକୁ ଯାଇ ଦେଖିଲେ କମିଶନର ଅନ୍ୟାନ୍ୟ ମେମ୍ବରମାନେ ଉଠିଗଲେଣି । ସେକ୍ରେଟେରୀ ଫାଇଲପତ୍ର ବନ୍ଧା ବନ୍ଧି କରୁଛନ୍ତି ।

ପଟ୍ଟନାୟକଙ୍କୁ ଦେଖି କମିଶନର ଚେୟାରମେନ ମିଃ ଉଡ୍‌ହାଉସ କହି ଉଠିଲେ 'କଂଗ୍ରାଚୁଲେସନ ପଟ୍ଟନାୟକ—ବସ ।'

ବିମୂଢ଼ ଭାବେ ବସିଲେ ସେ ।

''ସ୍ୟୁର୍ଲି ପି.ଏରୁ ଶୁଣିଲି ତୁମର ମ୍ୟାରେଜ ହୋଇଛି ।''

ସଲ୍ଲଜ ଭାବେ ନତ କଲେ ପଟ୍ଟନାୟକ ।

'ମୁଁ ଶୁଣି ଖୁସି ହେଲି ଯେ ତୁମେ ଇଣ୍ଟରକାଷ୍ଟ ମ୍ୟାରେଜ କରୁଛ । ଦେଖ ପଟ୍ଟନାୟକ ତୁମ ଭଳି ୟଙ୍ଗମ୍ୟାନମାନେ ଯଦି ତୁମ, ଇଣ୍ଡିୟାନ ସୋସାଇଟିର କାଷ୍ଟସିଷ୍ଟମ ବିରୁଦ୍ଧରେ ରିଭଲ୍ୟୁସନ ନକର ତେବେ ଇଣ୍ଡିଆର ପ୍ରୋଗ୍ରେସ ହେବନି ।' କହୁ କହୁ ଚେୟାରମ୍ୟାନ ଉଠିଲେ ।

ପଟ୍ଟନାୟକ ଦେଖିଲେ ସେତେବେଳେସି ଉଡହାଉସ୍ ସାହେବ ୟାଙ୍କୁ ସବୁ କଥା କହିଛନ୍ତି । କିନ୍ତୁ ଇଣ୍ଟରଭ୍ୟୁ ? ସେଥିପାଇଁ ସେ ଏତେ ଆଶା ଧରି ଆସିଥିଲେ ତା'ର ତ କିଛି ହେଲାନି । ହତାଶ ହେଲେ ପଟ୍ଟନାୟକ ।

ଏଇ ସମୟରେ ଫୋନ ରିଂ ହେଲା । ଚେୟାରମ୍ୟାନ ଫୋନ ଧରି କହିଲେ—ହଁ ସ୍ୟୁର୍ଲି ଏଇ ତ ପଟ୍ଟନାୟକ ସଙ୍ଗେ ମୋର କଥାବାର୍ତ୍ତା ଶେଷ ହେଲା । ଟିକିଏ ରହି ପୁଣି ସେ କହିଲେ—'ସିଓର ସିଓର ଏଇ ୟଙ୍ଗମ୍ୟାନମାନେ ତ ଇଣ୍ଡିଆକୁ ସୁପାରଷ୍ଟିସନରୁ ମୁକ୍ତ କରିବେ । ସେମାନଙ୍କ ସୋସାଇଟିରେ ନେତୃତ୍ୱ ଦେବା ସପକ୍ଷରେ ମୁଁ ତୁମ ସହ ଏକମତ । ପଟ୍ଟନାୟକକୁ ମୁଁ ସିଲେକ୍ଟ କରିଛି ।

ପଟ୍ଟନାୟକ ସାହେବ ସବ୍‌ଡେପୁଟି କଲେକ୍ଟର ହେଲେ । ସେ ଯୁଗର ସବଡେପୁଟି । ତାପରେ ଉନ୍ନତି ପାହାଚ ଡେଇଁ ଡେଇଁ ସେ ଆଗେଇ ଯାଇଛନ୍ତି । କିନ୍ତୁ ତାଙ୍କ ଦୀର୍ଘ ଚାକିରି ଜୀବନରେ ଅନେକ ଦୁର୍ଯୋଗ ଆସିଛି । କିନ୍ତୁ ସେ ସବୁର ଅବସାନ ହୋଇଛି ଶୁଭରେ । ବ୍ରିଟିଶ ଅମଳରେ ଯେତେବେଳେ ସେ ଡେପୁଟି-ମାଜିଷ୍ଟ୍ରେଟ ସେତେବେଳେ ତାଙ୍କୁ ସରକାର ବିରୋଧୀ କଂଗ୍ରେସ ଭକ୍ତ ବୋଲି ବଦନାମ କରିବାର ଅପଚେଷ୍ଟା ହୋଇଥିଲା । ତାଙ୍କ ବିରୁଦ୍ଧରେ ସ୍ପେଶାଲବ୍ରାଞ୍ଚର ରିପୋର୍ଟ ଓ ଉପରବାଲାଙ୍କ ସହାନୁଭୂତିହୀନତା ଯୋଗୁ ଚାକିରି ଯିବା ଉପରେ ଅବସ୍ଥା ହୋଇଥିଲା । ଅନେକ ଦୁଶ୍ଚିନ୍ତା ଓ ମନସ୍ତାପ ଯାଇଛି, କିନ୍ତୁ ସେହି ଅପବାଦ ତାଙ୍କୁ ପ୍ରଶସ୍ତ କରିଥିଲା । ମହତାବ ଚୌଧୁରୀ ପ୍ରଭୃତିଙ୍କ ସହ ସେ ଘନିଷ୍ଠତା ସ୍ୱାଧୀନତା ପରେ ଅନେକ କାମରେ ଲାଗିଥିଲା ।

ଏତ ଗଲା ଚାକିରି କଥା । ପାରିବାରିକ ଜୀବନରେ ଅନୁଭୂତି କିଣ କମ୍ ? ପଟ୍ଟନାୟକ ସାହେବ କରଣ । ନିହାତି ଗରିବଗୁରୁବା ଘରର ପିଲା । କିନ୍ତୁ ତାଙ୍କ ଶ୍ୱଶୁର ଅଭିଜାତ ଖଣ୍ଡାୟତ ବଂଶୋଦ୍ଭବ । ଆଭିଜାତ୍ୟ ଓ ଜାତିଆଣ ପ୍ରୀତି ଥିଲା, ତାଙ୍କର ପ୍ରବଳ ଦୁର୍ବଳତା । ତେଣୁ ଗୋଟାଏ ଚାଷୀଆ କରଣ ପିଲାକୁ କନ୍ୟାଦାନ

କରିବାରେ ତାଙ୍କର ଭୀଷଣ ଆପତ୍ତି ଥିଲା । ପଟ୍ଟନାୟକ ସାହେବଙ୍କର ସୁପାରିଶରେ ଉନ୍ନତି ହେବା ପରେ ବନ୍ଧୁବାନ୍ଧବମାନଙ୍କ ପ୍ରରୋଚନା ଓ ନିଜର ଜିଦ୍ ଯୋଗୁ ରାୟ-ବାହାଦୁର ଏ ବିଷୟରେ ରାଜି ହୋଇଥିଲେ ମଧ୍ୟ ଅନ୍ତରରେ ତାଙ୍କର ଜ୍ୱାଳା ଅପମାନର ଜ୍ୱାଳା ପ୍ରଶମିତ ହୋଇ ନଥିଲା । ଜ୍ୱାଇଁଙ୍କ ସହ ତାଙ୍କ ସମ୍ପର୍କରେ ଉନ୍ନତି ହେଲାନି । ନିରୁପାୟ ଆକ୍ରୋଶରେ ଅପମାନକୁ ଗଳାଧଃକରଣ କରି ରାୟବାହାଦୁର ଶଯ୍ୟାଶାୟୀ ହେଲେ ଓ ଅବାଧ୍ୟ କନ୍ୟାକୁ ଉତ୍ତରାଧୀକାରରୁ ବଞ୍ଚିତ କରିବା ପାଇଁ କୌଣସି ଚିନ୍ତା କରିବାର ଅବକାଶ ମଧ୍ୟ ପାଇଲେ ନାହିଁ । ହୃଦରୋଗରେ ତାଙ୍କର ମୃତ୍ୟୁ ହେଲା । ନିର୍ବିବାଦରେ ବିରାଟ ପୈତୃକ ସମ୍ପତ୍ତିର ଉତ୍ତରାଧିକାରିଣୀ ହୋଇଥିଲେ ପଟ୍ଟନାୟକଙ୍କ ଜାୟା ଶାନ୍ତିଦେବୀ ।

ପଟ୍ଟନାୟକ ସାହେବଙ୍କର ଶିକ୍ଷିତ ପରିବାର । ଗୋଟିଏ ପୁଅ ଅମିତାଭ । ଗୋଟିଏ ଝିଅ ଅଶୋକା । ଅଶୋକାର ଜନ୍ମପରେ ଶାନ୍ତିଦେବୀଙ୍କର ଜରାୟୁରେ ଗୋଳମାଳ ହୋଇ ଜୀବନ ସଙ୍କଟାପନ୍ନ ହୋଇ ଯାଇଥିଲା । ଗୋଟାଏ ବଡ଼ ଧରଣର ଅପରେସନ ପରେ ସେ ସୁସ୍ଥ ହେଲେ । ତାପରେ ଆଉ ପିଲାପିଲି ହୋଇ ନାହାନ୍ତି ।

ପଟ୍ଟନାୟକ ସାହେବ ହସନ୍ତି—'ବୁଝିଲ୍, ତୁମ ସରକାର ପରିବାର ନିୟନ୍ତ୍ରଣ କରିବା କଥା ଚିନ୍ତା କରିବା ପୂର୍ବରୁ ଆମେ ସେ କଥା କରିଛୁ । ସେଥିପାଇଁ ତ ଆମର ଶ୍ରେଷ୍ଠ ପରିବାର । ସୁଖୀ ପରିବାର ।

ପ୍ରକୃତରେ ପଟ୍ଟନାୟକ ସାହେବଙ୍କର ସୁଖୀ ପରିବାର । ଜୀବନଟି ତାଙ୍କୁ ଅକୃପଣ ଭାବେ ସବୁ ଦେଇଛି ଯାହା ସେ ଚାହିଁଥିଲେ ତାଠାରୁ ବି ଅଧିକ । ଅମିତାଭ ଓ ଅଶୋକା ଉଭୟେ ଖୁବ୍ ଶାନ୍ତ ଭଦ୍ର ଓ ରୁଚିବାନ । ପଢ଼ାପଢ଼ିରେ ଅସମ୍ଭବ ମେଧାବି । ଅମିତାଭ ପଢ଼ା ଶେଷ କରି କଣ ଗୋଟାଏ ଫେଲୋସିପ ପାଇ ଆମେରିକା ଯାଇଛି । ଅଶୋକା ବର୍ତ୍ତମାନ ପୋଷ୍ଟଗ୍ରାଜୁଏଟର ଛାତ୍ରୀ । ଶାନ୍ତିଦେବୀ ଶିକ୍ଷିତା ଓ ବୁଦ୍ଧିମତୀ । ବେଶ ଗମ୍ଭୀର ଓ ବ୍ୟକ୍ତିତ୍ୱ ସମ୍ପନ୍ନା । ଘରର ସମସ୍ତ ଦାୟିତ୍ୱ ତାଙ୍କର । ପଟ୍ଟନାୟକ ସାହେବ ନିଜ ମନ ଖୁସିରେ ଚାକିରି କରନ୍ତି ।

ଏଇତ ଅଳ୍ପଦିନ ତଳେ ପଟ୍ଟନାୟକ ସାହେବଙ୍କର ପଦୋନ୍ନତି ହେଲା । ରେଭିନ୍ୟୁ ଡିଭିଜନାଲ କମିସନର ହୋଇ ସେ ସମ୍ବଲପୁର ଗଲେ । ସେ ଉପଲକ୍ଷେ ଗୋଟିଏ ପାରିବାରିକ ଭୋଜକୁ ମୁଁ ଯାଇଥିଲି । ପଟ୍ଟନାୟକ ସାହେବଙ୍କ ପରିବାରରେ ବହୁ ଆୟୋଜନ ନିଖୁଣ । ବହୁ ଅତିଥି ଓ ଜନ୍ମ, ସମସ୍ତଙ୍କ ମୁହଁ ଖୁସିରେ ଢଳଢଳ । ବହୁତ ମଜଲିସ ହେଲା, ଖିଆପିଆ ହେଲା । ବହୁତ ଗପ ବି ହେଲା ।

ପଟ୍ଟନାୟକ ସାହେବ କହିଲେ—'ଆଜି ମୁଁ ଭାରି ଖୁସି । ମୋର ଏ ପ୍ରମୋସନଟା ନ କରିଦେବା ପାଇଁ ଡାମିଲିଆନ ଗ୍ରୁପ ବହୁତ ଚେଷ୍ଟା କରିଥିଲେ ।

କିନ୍ତୁ ସେମାନଙ୍କର ଚେଷ୍ଟା ସଫଳ ହେଉ ନାହିଁ । କ୍ୟାବିନେଟ ମିଟିଂରେ ନିଜେ ଚିଫ୍ ମୋ ପାଇଁ ଲଢିଲେ । ମୋର ଆଉ କିଛି ଅଭିଳାଷ ନାହିଁ । ଆଉ ତ ଅଳ୍ପଦିନ ପରେ ରିଟାୟାର୍ କରିବି । ତାପରେ ଭଗବାନଙ୍କ ନାମ ନେବି ।" ତାଙ୍କ ମୁହଁରେ ଜଣେ ସୁଖୀ ବ୍ୟକ୍ତିର ତୃପ୍ତିର ହସ ଲାଗି ରହିଥିଲା ।

ମଣିଷ ଯେତେବେଳେ ନିଜକୁ ପରମ ସୁଖୀ ଭାବି ଆତ୍ମତୃପ୍ତି ପାଏ ବିଧାତା ପୁରୁଷ ବୋଧହୁଏ ସେତେବେଳେ ହସନ୍ତି, ତା ନହେଲେ ଏମିତି ଅଘଟଣ କାହିଁକି ହୋଇଥାନ୍ତା ?

ସେଦିନ ପଟ୍ଟନାୟକ ସାହେବଙ୍କୁ ସମ୍ବଲପୁର କଟକ ରାସ୍ତା ଧାରର ନିର୍ଜନ ଡାକ ବଙ୍ଗଳାଟାରେ ହଠାତ୍ ଦେଖି ମୋର ଖଟକା ଲାଗିଲା । ଟୁର୍‌ରେ ଆସି ମୁଁ ସେଇ ବଙ୍ଗଳାଟାରେ ରହିଥିଲି । ସେ ଦିନ କାମରୁ ଫେରି ବଙ୍ଗଳା ଆଗରେ ଗାଡ଼ିଟାକୁ ଦେଖି ମୁଁ ଚମକି ପଡ଼ିଲି । ଗାଡ଼ିଟା ମୋର ପରିଚିତ । କିନ୍ତୁ ବଙ୍ଗଳାଟା ନିର୍ଜନ । କେହି କୁଆଡ଼େ ନାହାନ୍ତି । ଡ୍ରାଇଭରଟେ ବି ନାହିଁ । କମିସନର ଗସ୍ତରେ ଆସିଲେ ତ ଏମିତି ହବା କଥା ନୁହେଁ । ସନ୍ଦେହ ହେଲା । ବଙ୍ଗଳା ଚୌକିଦାରକୁ ଡାକିଲି । ସେ ପାଖରେ ଥିଲା । କହିଲା ସାହେବ ଏକା ଆସିଛନ୍ତି । ଆରପଟ ବାରଣ୍ଡାରେ ବସିଛନ୍ତି ।

ସନ୍ତର୍ପଣରେ ଯାଇ ଛିଡ଼ା ହେଲି । ଗୋଟିଏ ଆରାମ ଚେୟାରରେ ଦୁଇ ହାତରେ ମୁହଁକୁ ଘୋଡ଼ାଇ ଅର୍ଦ୍ଧ ଶାୟିତ ଅବସ୍ଥାରେ ପଟ୍ଟନାୟକ ସାହେବ ବସିଛନ୍ତି । ବେଶବାସରେ ପରିପାଟି ନାହିଁ । ସମସ୍ତ ଶରୀର ଯେପରି ଅବସନ୍ନ ।

ଡାକିବାକୁ ସାହସ ହେଲାନି । ଛିଡ଼ା ହୋଇ ରହିଲି । କିଛି ସମୟ ପରେ ମୋର ଅର୍ଡର୍ଲି ଦୁଇ କପ ଚା' ନେଇ ଆସିଲା । ପଟ୍ଟନାୟକ ସାହେବ ଆଖି ଖୋଲି ଚାହିଁଲେ ମୁହଁରେ ବିଷଣ୍ଣ ଗମ୍ଭୀରତା । କୌଣସି ଉଚ୍ଛ୍ୱାସ ପ୍ରକାଶ ନ କରି କହିଲେ—ବସ ।

ବସିଲି ।

'କଟକରୁ କେବେ ଆସିଛ ?'

'ପ୍ରାୟ ସପ୍ତାହେ ହେବ ।'

'ଓ'—ଚୁପ ରହିଲେ ସେ ।

ମୁଁ ତାଙ୍କ ହାତକୁ ଚା' ବଢ଼ାଇ ଦେଲି । ନୀରବରେ ଚା ନେଇ ଚାହିଁ ରହିଲେ ସେ ଦୂରକୁ ବିଷଣ୍ଣ ଉଦାସ ଦୃଷ୍ଟିରେ । ଆପଣ ହଠାତ୍ ଏକୁଟିଆ କୁଆଡ଼େ ଆସିଲେ ?' ପଚାରିଲି ଟିକିଏ ଚୁପରହି । ସେ କହିଲେ—'କଟକ ଯାଉଥିଲି—ମୁଣ୍ଡଟା ଝାଇଁ ଝାଇଁ ହେଲା—ଗାଡ଼ି ଚଲେଇ ପାରିଲି ନାହିଁ । ଟିକିଏ ରେଷ୍ଟ ନେବାପାଇଁ ବସିଗଲି ।

ଜାଣିଥିଲି ପଟ୍ଟନାୟକ ସାହେବ ସମ୍ବଲପୁରରେ ଏକୁଟିଆ । ନୂଆବୋଉ ଓ ଅଶୋକା କଟକରେ ରହୁଛନ୍ତି । ପୁଣି ଜଣେ ଗାଡ଼ି ଚଳେଇ ପଟ୍ଟନାୟକ ସାହେବ ଯେତେବେଳେ କଟକ ଯାଉଛନ୍ତି, କାରଣଟା ନିଶ୍ଚୟ ଜରୁରୀ । ତଥାପି ତାହାଙ୍କ କୈଫିୟତ ପଚାରିବାକୁ ସାହସ ହେଲାନାହିଁ । ଉଦଗ୍ରୀବ ହୋଇ ବସି ରହିଲି ।

ଚା' କପଟାକୁ ଟିପୟ ଉପରେ ଥୋଇ ପଟ୍ଟନାୟକ ସାହେବ କହିଲେ— 'ବଡ଼ ଦୁଃସମ୍ବାଦ' ତୋ ନୂଆବୋଉଙ୍କର ସେରବ୍ରେଲ ଷ୍ଟ୍ରୋକ ହୋଇଛି । କାଲି ସଞ୍ଜରୁ ସେ ସଂଜ୍ଞାହୀନ । ବର୍ତ୍ତମାନ ନର୍ସିଂ ହୋମରେ । ମୁଁ ତ ଆଜି ବହୁତ ଡେରିରେ ଖବର ପାଇଲି । କଟକ କଲେକ୍ଟର ମୋତେ ଫୋନକରି ଜଣେଇଲେ । ତାଙ୍କ ବର୍ତ୍ତମାନ ଅବସ୍ଥା ମୁଁ କିଛି ବୁଝିପାରୁନି ।' ତାହାଙ୍କ ଘରେ କଣ ଆଉ କେହି ନାହାନ୍ତି' ? ପଚାରିଲି 'ଥିବେ – ଥିବେ ନିଶ୍ଚୟ । ଚାକର ପୂଝାରୀ ଥିବେ । 'ଅଶୋକା ।'

'ଅ-ଶୋ-କା' ତିନିଏ ବିଳମ୍ବିତ ଭାବେ ଉଚ୍ଚାରଣ କରି ପଟ୍ଟନାୟକ ସାହେବ ଚୁପ ରହିଲେ ।

'ଅଶୋକା' ପୋଲିସ ଆଇ: ଜି: ସମସୁର ରହେମାନ ପୁଅ ଆଲତାଫକୁ କାଲି ବାହା ହୋଇଛି । ରେଜେଷ୍ଟ୍ରି ମ୍ୟାରେଜ । ସେମାନେ ନାହାନ୍ତି ।'

'ଆଲତାଫ ? ଅଶୋକା ଆଲତାଫକୁ ବାହା ହୋଇଛି ?'

ବିସ୍ମୟରେ ମୁଁ ସ୍ତବ୍ଧ ହୋଇଗଲି ।

'ଏ ଖବର ଶୁଣି ତୋ ନୂଆବୋଉର ଷ୍ଟ୍ରୋକ ହେଲା ।'

ପଟ୍ଟନାୟକ ସାହେବ ମ୍ଲାନ ହସିଲେ । ମୋତେ ଲାଗିଲା ସେ ଲୁହକୁ ବାନ୍ଧିବାକୁ ଚେଷ୍ଟା କରୁଛନ୍ତି ।

ତା ପରେ ସେ ଧୀରେ ଧୀରେ ଉଠିଲେ, କହିଲେ 'ମୁଁ ଯାଉଛି । ମୋତେ ବହୁତ ଦୂର ଯିବାକୁ ହେବ । ମୁଁ ସେମିତି ସ୍ତବ୍ଧ ହୋଇ ଛିଡ଼ା ହୋଇ ରହିଲି । ପଟ୍ଟନାୟକ ସାହେବଙ୍କ ଗାଡ଼ିଟା ଧୂଳି ଉଡ଼େଇ ଚାଲିଗଲା । ଧୂଳିର ପଟଳ କାଳିସମସ୍ତ ପବନରେ ଉଡ଼ି ପରିଷ୍କାର ହୋଇଗଲା । ମୁଁ ସେମିତି ଛିଡ଼ା ହୋଇ ରହିଲି । ପଟ୍ଟନାୟକ ସାହେବଙ୍କୁ ତାଙ୍କର ଏ ଦୁର୍ଦ୍ଦିନରେ ପଦେ ସାନ୍ତ୍ୱନାର କଥା କହିପାରିଲି ନାହିଁ । ତାଙ୍କୁ ମୁଁ କହିପାରିଲିନି 'ଅଶୋକା ଓ ଆଲତାଫ କମ୍ୟୁନାଲିଜମ ବିରୁଦ୍ଧରେ ଚ୍ୟାଲେଞ୍ଜ କରିଛନ୍ତି । ତା ନହେଲେ ଇଣ୍ଡିଆର ଭବିଷ୍ୟତ ହେବ କଣ ? ଆପଣ ତାହାଙ୍କ ବ୍ୟସ୍ତ ହେଉଛନ୍ତି । ସେମାନଙ୍କୁ ଆଶୀର୍ବାଦ କରନ୍ତୁ ।



# ଶବର ଶୋଭାଯାତ୍ରା

● ଶ୍ରୀମତୀ ବିମଳା ରାୟ

ପଟୁଆର ଚାଲିଛି...
ଏ ପଟୁଆର ଜନତାର
ଯା' ଭିତରେ ଛାତ୍ରମାନଙ୍କର ସଂଖ୍ୟା ସର୍ବାଧିକ।
ଧ୍ୱନି ଉଠୁଛି ... ।
ଆମର ଦାବି ...
ପୂରଣ ହେଉ।
ଛାତ୍ର ଓ ଜନତା
ଜିନ୍ଦାବାଦ ...।
ପଛେ ପଛେ ଗୋଟିଏ ଶବ ଚାଲିଛି।
ମାଲ ଭାଇମାନେ ଡାକଛାଡ଼ି ଚାଲିଛନ୍ତି...ରାମନାମ ସତ୍ୟ ହୈ।
ରାମନାମ ସତ୍ୟ ହୈ।

ଗାନ୍ଧି ଶତବାର୍ଷିକ ପାଇଁ ଲେଖୁଥିବା ପ୍ରବନ୍ଧଟିକୁ ଅଧାରଖି ଗୀତାମସ୍ତ ଝରକାବାଟେ ଚାହିଁଲା।

ପଟୁଆର ଚାଲିଛି।
ଶବଯାତ୍ରା ବି ଚାଲିଛି

ଦୁଇଟା ଯାକର ଆରମ୍ଭ ଅଛି ଶେଷ ନାହିଁ। ଏ ଧ୍ୱନି ଚିରନ୍ତନ। ସେ ଆଖି ଫେରାଇ ପ୍ରବନ୍ଧ ଲେଖିବାକୁ ଚେଷ୍ଟା କଲା ?

ବାହାରେ ଟିଅର ଗ୍ୟାସସେଲ ଫୁଟିବାର ଶବ୍ଦ ଶୁଣାଯାଉଛି । ପୋଲିସର ଲାଠି ଚାଲିଛି । ଲୋକଙ୍କର ଚିତ୍କାର ଶୁଣାଯାଉଛି। ପ୍ରବନ୍ଧ ଲେଖିବା ଅଧାରଖି ଗୀତମସ୍ତ ଦେହରେ ଶାର୍ଟ ଗଳାଇ ବାହାରକୁ ବାହାରିଲା। ପୋଲିସ ଓ ଛାତ୍ରମାନଙ୍କ ଭିତରେ ସଂଘର୍ଷ ଲାଗିଛି। ଢେଲା ପଥର ବୃଷ୍ଟି ହେଉଛି। ପୋଲିସ ବ୍ଲାଙ୍କ ଫାଏରିଂ କରୁଛି।

ବ୍ୟାଗଟାକୁ ତଳେ ଥୋଇଦେଇ ମାର୍କଣ୍ଡ କହିଲା—ଆଜି ଦୋକାନ ବଜାର ସବୁ ବନ୍ଦ ଦାଦୁ। ଅଟା, ସୁଜି, ଚିନି କିଛି ମିଳିଲାନି, କଲେଜ ପିଲାମାନେ ସବୁ ବନ୍ଦ କରି ଦେଇଛନ୍ତି। ସାମନାରେ ଛାତ୍ରନେତା ସୁମନ୍ତ ସାମଲକୁ ପୋଲିସ ଆରେଷ୍ଟ କରିନେଉଛନ୍ତି। ସୁମନ୍ତ ସାମଲ...। ଭଲ କହିପାରେ । କଥାରେ ସେ ବୁଦ୍ଧିର

ସୃଷ୍ଟି କରି ଲୋକଙ୍କ ମନକୁ କିଣିପାରେ । ଅପରିଚିତ ଭାବରେ ସେ ଲୋକଙ୍କୁ ସାହାଯ୍ୟ କରେ । ରିକ୍ସାବାଲାଙ୍କୁ ଏକଜୁଟ କରାଇ ଧର୍ମଘଟ କରାଏ । ସହରରେ ରିକ୍ସା ମିଳେନି ।

ସେଦିନ ଗୀତମସ୍କୁ ଦେଖି ହ୍ୟାଣ୍ଡସେକ କରି କହିଥିଲା—ଆପଣଙ୍କ ପ୍ରବନ୍ଧ ଖୁବ ଚମତ୍କାର ଲାଗିଲା ଗୀତମସ୍ତ ବାବୁ । ଏମିତି ପ୍ରତିଭା ଖୁବ୍ କମ୍ ଲୋକଙ୍କର ଥାଏ । ଲେଖନୀ ଆପଣଙ୍କର ଦୀର୍ଘଜୀବୀ ହେଉ । ଲୋକଙ୍କ ମନରେ ଜାଗରଣ ସୃଷ୍ଟି କରୁ । ଏଇ ସୁମନ୍ତ୍ର ସାମଲ ଦୁଇବର୍ଷ ଘରଭଡ଼ା ନ ଦେଇ ଏଇ ପଡ଼ାରେ ରହିଥିଲା । ହୋଟେଲରେ ଖାଇ ପଇସା ଦେଇନି । ଧୋବାଘର ଲଣ୍ଡ୍ରିରେ ତାର ଏଯାଏ ପଇସା ବାକି ରହିଛି ।

ସେ ସମସ୍ତଙ୍କୁ ଧମକ ଦେଇଛି...... ...

ସେମାନଙ୍କୁ ସୁବିଧା ପାଇଲେ ଦେଖିନେବ ।

ସେଦିନ ଅପନା ସୁମନ୍ତ୍ରକୁ ଦେଖି କହିଲା—"କଣ ବାବୁ" ପଇସା କେବେ ମିଳିବ... । ଟଙ୍କାଏ ଅଠଅଣା ନୁହେଁ । ପାଞ୍ଚଟଙ୍କା ଗରିବ ଲୋକ । ପିଲାଏ ଭୋକରେ ରହୁଛନ୍ତି ।

ଗୀତମସ୍ତ ଆଗରେ ସୁମନ୍ତ୍ର ଅପ୍ରସ୍ତୁତ ହୋଇପଡ଼ିଲା । ମୁହଁର ଭାବକୁ କଥା ସମ୍ଭବ ସହଜ କରି କହିଲା—ହଁ, ହଁ ମୋର ମନେଅଛି । ଅଜିତ ପଇସା ନାହିଁ କାଲିଯାଇ ମୋ ବସାରୁ ନେଇ ଅସିବୁ । ଆପଣଙ୍କ ବସାରେତ ଆଜ୍ଞା ହଜୁରିବେଳେ ତାଲା ଝୁଲୁଛି । ଦଶଥର ଯାଇ ଫେରି ଆସିଲିଣି ।

—ତୋଭଳି ତ ମୁଁ ଲଣ୍ଡ୍ରି କରିନି ଯେ ଚବିଶଘଣ୍ଟା ଘରେ ଥିବି, ତୁ ସମସ୍ତ ଦେଖି ଯାଉନୁ ?

ହଁ ବାବୁ ଗରିବ ଲୋକ ଆମେ । ପେଟ ପୋଷିବାରେ ଦୋଷ ନାହିଁ । ଆପଣ ବଡ଼ ଲୋକ । ପାଠ ପଢ଼ିଛନ୍ତି ଚାଲିଛନ୍ତି । ପର ଭଣ୍ଡି ଚରି ଲକ୍ଷପତି ହେବେ ।

—ଏ ଅପନା ମୁହଁ ସମ୍ଭାଳି କଥା କହ । ମୁହଁ ତ ତୋର ବଢ଼ିଯାଉଛି ।

ମୁହଁ କେହି କାହାର ବଢ଼ାଏନି ବାବୁ । ସେ ଆପେ ଆପେ ବଢ଼ିଯାଏ । ମୁଁ ଧୋବା ହେଲେ ବି ଏ ପେଟ୍ରେ କୋଡ଼ିଏ ଦଫା ଜନ୍ମିଲଣି ମୋର । ପଗ୍ଗର ବୁଝିବ ମୁଁ କାହାର ପଇସାଟିଏ ବୁଡ଼ାଇଛି ?

ତୁ ମ୍ୟୁନିସିପାଲିଟିର ଅନୁମତି ନେଇ ଏ କ୍ୟାବିନ ପକାଇଛୁନା ସେମିତି ?

—ଅପଣତ ମ୍ୟୁନିସିପାଲିଟି ହାକିମ ନୁହନ୍ତି ?

—ହାକିମର ବଡ଼ ଦାପା ବୁଝିଲୁ ? ସେମିତି କଥାବାର୍ତ୍ତା କରୁଛୁ ପଞ୍ଚ-ବେଳକୁ କ୍ୟାବିନ ତୋର ନଥିବ । କାଆଁ ଜଳୁଥିବ ସେଠି ବୁଝିଲୁ ?

'ଜଳୁ'...ଅପଣଙ୍କ ଭଳି କେତେ ବାବୁଙ୍କର ଲୁଗାପଟା ପୋଡ଼ିଯିବ । ଆଉ ତା ସାଙ୍ଗରେ ମୋର କ୍ୟାବିନଟା ପୋଡ଼ିଯିବ । ଲଭ ଅପଣଙ୍କର ହେବନାହିଁ

ମୋର ହେବନ । ଆପଣତ ପୁଣି ଲକ୍ଷ ଲକ୍ଷ ଟଙ୍କାର ସରକାରୀ ବସ ପୋଡ଼ ଦେଉଛନ୍ତି, ବନାଟିକଟରେ ବସରେ ଯାଇ କଣ୍ଡକ୍ଟରବାବୁଙ୍କୁ ମାରୁଛନ୍ତି । ବଡ଼ ଅଫିସର ହେଲେ ସରକାରୀ ଟଙ୍କା ତୋସରପାତ କରିପାରୁଛନ୍ତି । ସବୁ କଥା ଆପଣମାନେ କରିପାରନ୍ତି ।

ଅପନା ମୁହଁ ବୁଲାଇ ଚାଲିଗଲା ।

ପାନାମା ସିଗାରେଟ ଖଣ୍ଡେ କାଢ଼ି ସେଥିରେ ଅଗ୍ନି ସଂଯୋଗ କରି ଟାଣିବାକୁ ଲାଗିଲା ସୁମନ୍ତ ସାମଲ । ଏ ଅଗ୍ନି ସଂଯୋଗବେଳେ ଭାବୁଥିଲା ଅପନାର କାବନରେ ନିଆଁ ଲଗାଇ ଦେଇପାରିଲେ କପରି ହୁଅନ୍ତା ?

ହୋଟେଲ ମାଲିକ ଶମ୍ଭୁନାଥ ଧୀରେ ଧୀରେ ଆସି ପାଖରେ ଠିଆ ହେଲେ ।

—ନମସ୍କାର ସୁମନ୍ତବାବୁ···ଏବେ ଆଉ ଚହ୍ନି ପାରୁନାହାନ୍ତି ?

—ନାଁ···ନାଁ ଶମ୍ଭୁନାଥବାବୁ ଠିକ୍ ତା ନୁହେଁ । ଆପଣଙ୍କ ଟଙ୍କାଟା ଦେଇ ପାରିନ । ସେଇ ନେଇ···

—ସେଥିରେ କଣ ଅଛି···ସୁବିଧା ହେଲେ ଦେଇ ଦେବେ । ସୁବିଧା ଅସୁବିଧାତ ପୁଣି ସମସ୍ତଙ୍କର ଅଛି । ତେବେ ଆଜ୍ଞା ଟିକେ ଚେଷ୍ଟା କରିବେ ଶୀଘ୍ର ଦେବାପାଇଁ ?

ନିଶ୍ଚୟ···ନିଶ୍ଚୟ । ସିଗାରେଟ ଖଣ୍ଡିକ ଟାଣିଟାଣି ସୁମନ୍ତ ସାମଲ ସେଠୁ ଚାଲିଗଲା ।

ଶମ୍ଭୁନାଥ ଗୀତମସ୍ଙ୍କୁ ଲକ୍ଷ୍ୟ କରି କହିଲେ—ଦେଖିଲେ ତ ବାବୁ··· ଏଇମାନେ ହେବେ ଏ ଦେଶର ଭବିଷ୍ୟତ—ଉପମନ୍ତ୍ରୀ, ମନ୍ତ୍ରୀ । ଶାସନ ଚାଲିବ ଏଇମାନଙ୍କ ହାତରେ ।

ସେଇ ସୁମନ୍ତ ସାମଲ, ପୋଲିସର ଲାଠିମାଡ଼ ଖାଇ ଆରେଷ୍ଟ ହୋଇ ଯାଉଛି । ଦଳେ ଗୁଣ୍ଡ ପୋଲିସ୍ ପଛେ ପଛେ ଧାଇଁଛନ୍ତି ।

ଏଇମାନେ ଦନେ ହେବେ ପୋଲିସ୍ ଇନସ୍ପେକ୍ଟର, ଏସ୍.ପି , ଡ଼.ଏସ.ପି., ଆଇ.ଏ:ଏସ୍ । ଆଜିର ଉତ୍ତେଜନା ସେତେବେଳକୁ ଥଣ୍ଡାପଡ଼ିଯାଇଥିବ । ଲାଠି ଚାର୍ଜ ଆଉ ଫାୟାରିଂ ପାଇଁ ଅର୍ଡରସିଟରେ ଦସ୍ତଖତ କଲାବେଳକୁ···ଆଜି କଥା ମନେ ନଥିବ ହୁଏତ ।

କାନ୍ଧରେ କାହାର ମୃଦୁ ସ୍ପର୍ଶ··

ଚମକି ପଡ଼ି ଫେରିଚାହିଁଲା ଗୀତମସ୍ । ପାଖରେ ତାର ଛିଡ଼ା ହୋଇଛି 'ତରୁଣ ଦାସ' ପୋଲିସ ସି:ଆଇ:ଡ ଇନସ୍ପେକ୍ଟର ।

—କିରେ ତୁ କେବେ ?

ଏଇ ଖୁବ୍‌ଧନ ହେବ ଟ୍ରାନ୍ସଫର ହୋଇ ଆସିଛୁ । ହଠାତ୍ ତୋ ସଙ୍ଗରେ ଏ ରାସ୍ତା ମଝିରେ ଦେଖା ହେବ ଭାବିନଥିଲି । କଣ ଦେଖୁଛୁ ?

—ତୁମର କାନ୍ତି······ ।

“ଓଃ, ଏ ଭାଇ ଗୁରୁକଥା ବୁଝିଲୁ ?

ତୁ କଲେଜରେ ପଢ଼ିଲାବେଳେ କେତେଥର ଲାଠି ମାଡ଼ ଖାଇଥିଲୁ ମନେ ଅଛି ? ତୋର ପରା ମୁଣ୍ଡଫାଟି ଯାଇଥିଲା ଛାତ୍ର ଆନ୍ଦୋଳନ ସମୟରେ ତରୁଣ ।”

ମନେଅଛି ଗୀତମସ୍ତ, ସବୁ ମନେଅଛି । ଏ ତରୁଣ ଛାତ୍ରଦଳଙ୍କ ଉପରେ ଯେତେବେଳେ ଲାଠି ମାଡ଼ ବସେ···ମୋର କଣ ମନେହୁଏ ଜାଣୁ···ସେ ପାହାର ଗୁଡ଼ାକ ସବୁ ଯେପରି ମୋର ଉପରେ ବସୁଛି । ହେଲେ ଭାଇ···ଏ ଉତ୍ତେଜନା ଚିରନ୍ତନ···ଚିର ଜାଗ୍ରତ । ଏହା ଭିତରେ ଆମର ପୁଅ, ଝିଅ, ଭାଇ, ଭଉଣୀ ସବୁ ସ୍ଲୋଗାନ ଦେଉଥିବା ବେଳେ, ଆମେ ତାଙ୍କ ମୁଣ୍ଡ ଉପରେ ଲାଠି ଚଲାଉଥିବୁ ।

ତୁ ଦାର୍ଶନିକ କେବେହେଲୁ ତରୁଣ ?

କ୍ରାଇମବ୍ରାଞ୍ଚରେ ରହିଲାପରେ । ଡାକ୍ତର ରୋଗୀ ଦେଖି ଦେଖି ଯେପରି ରୋଗ ପ୍ରତି ଉଦାସୀନ ହୋଇପଡ଼ନ୍ତି, ଆମେ ସେମିତି ଅପରାଧକୁ ଅପରାଧ ବୋଲି ମନେକରୁନୁ । ତୁ' ଜାଣୁ ଗୀତମସ୍ତ ଶାସନ ଶୃଙ୍ଖଳାକୁ ହାତରେ ରଖି ଆମର ବଗଗଠା ଦୁର୍ନୀତିକୁ କିପରି ଏକଗୁଟିଆ କରି ପକାଇଛୁ । ମୁଁ ବି ଦିନେ ଟେକା ଫୋପାଡ଼ି ଜଣେ କନଷ୍ଟେବଲର ମୁଣ୍ଡ ଫଟାଇଦେଇଥିଲି କଲେଜରେ ପଢ଼ିଲାବେଳେ । ଆଜି ସେଇ ତରୁଣ ଦାସ ବର୍ତ୍ତମାନ ସି: ଆଇ: ଡି. ପୋଲିସ ଇନସ୍ପେକ୍ଟର । ବୁଝିଲୁ ଗୀତମସ୍ତ ଦୋଷ ସରକାରର ନୁହେଁ, ଜନତାର ନୁହେଁ, ଛାତ୍ରଙ୍କର ନୁହେଁ । ଦୋଷ ହେଉଛି ଏ ମଣିଷ ଜାତିର ।

ଗୀତମସ୍ତ ଦେଖିଲା ପଟୁଆର ନାହିଁ—ଶବଯାତ୍ରାବି ନାହିଁ । ସବୁ ଚାଲିଗଲାଣି, ତରୁଣ ଦାସ ତା' ହାତକୁ ଟାଣି ଟାଣି ନେଲା ରାସ୍ତା କଡ଼ର ଗୋଟାଏ ରେଷ୍ଟୁରାଣ୍ଟକୁ··· ।



## ମନ ଓ ମନନ

● ଶ୍ରୀ ଶରତ ଚନ୍ଦ୍ର ନାୟକ

ସେ ଏକ ନିହାତି ବ୍ୟତିକ୍ରମ !

ମୋର ସହପାଠିନୀ ମନସ୍ତତ୍ତ୍ୱର ଷଷ୍ଠ ବାର୍ଷିକ ଛାତ୍ରୀ ମୌସୁମୀ ମୁଖାର୍ଜୀ । ବିଶ୍ୱଭାରତୀର ବିଖ୍ୟାତ ଯୁକ୍ତିପ୍ରିୟା ଓ ତର୍କକୁଶଳା ମିସ୍ ମୁଖାର୍ଜୀ ମୋତେ ହଠାତ୍ ପ୍ରଶ୍ନ କରି ଉଠିଲେ—

: ବସ୍ତୁ ଓ ଅବସ୍ତୁ—ଏ ଦୁଇଟା କ'ଣ ଏକା ଜିନିଷ ନୁହେଁ ?

: ନା, ଉଭୟେ ସେ ଏକାନ୍ତ ବିପରୀତ ଧର୍ମୀ ।

ଆର୍ଗୁମେଣ୍ଟ ଥିଲି ମୌସୁମୀ ଦେବୀଙ୍କ ହବି । ତାଙ୍କ ଯୁକ୍ତି ଖଣ୍ଡନ କଲେ ସେ ଅଗ୍ନି ଶର୍ମା ହୋଇଉଠନ୍ତି । ଆଉ ତାହାହିଁ ହେଲା । କଳାଡୋଳା ଦୁଇଟାକୁ ନାଲି ଟକ ଟକ କରିଦେଇ ସେ ମୋ ଉପରକୁ ଗୋଟିଏ କ୍ଷୁଧିତା ବାଘୁଣୀପରି ଚଢ଼ିକି ଉଠିଲେ । ମୁଁ ତାଙ୍କ ଆଗରେ ସତେ ଯେପରି ଗୋଟିଏ ନିରୀହ ମେଷଶାବକ । କିନ୍ତୁ ମୌସୁମୀ ଦେବୀଙ୍କ ଏ ପ୍ରକାର ଆଚରଣ ଓ ଆକ୍ରମଣରେ ମୁଁ ଚିର ଅଭ୍ୟସ୍ତ । ତେଣୁ ସଙ୍ଗେ ସଙ୍ଗେ ନିର୍ଲିପ୍ତ ଭାବେ କହି ଉଠିଲି—

: ଦେଖନ୍ତୁ, ପୋଜିଟିଭ୍ ନେଗେଟିଭ୍—ପ୍ଲସ୍ ମାଇନସ୍—ଏ ସବୁ କ'ଣ Anti ଧର୍ମ ନୁହନ୍ତି ?

ଯୁକ୍ତିତର୍କର ଫୁଟବଲ୍ ମ୍ୟାଚ୍‌ରେ ଏକ ନିଶ୍ଚିତ ଗୋଲ୍‌ରୁ ରକ୍ଷାପାଇବା ପାଇଁ ଜଣେ ସୁଦକ୍ଷ ଗୋଲ୍‌କିପର ପରି ପ୍ରସ୍ତୁତ ହୋଇ ଉଠି ମିସ୍ ମୁଖାର୍ଜୀ ଯୁକ୍ତି ବାଢ଼ି ବସିଲେ—

: ତୁମେ ମୋ ପଏଣ୍ଟର ଠିକ ଇଣ୍ଟରପ୍ରେଟ୍ କରିପାରୁନା । ଏଇ ଧର ପ୍ରେମ କ୍ଷେତ୍ରରେ—ଦେହ ନେବା ଆଉ ଦେହ ଦେବା କ'ଣ—ଏକା କଥା ନୁହେଁ ?

ମୁଁ ହସିଲି । ସେ ହସ ନିର୍ବୋଧ । ମିସ୍ ମୁଖାର୍ଜୀଙ୍କ ପ୍ରତି ହୁଏତ ଅର୍ଥଶୂନ୍ୟ ଥିଲା । କିନ୍ତୁ ସେତେବେଳେ ତାଙ୍କ କାନ ନିକଟକୁ ଝୁଙ୍କିପଡ଼ି ମୁଁ ଚୁପି ଚୁପି କହିଲି—

: ତୁମେ ହୁଏତ ଜାଣିନା ମୌସୁମୀ, ଦେହ ନେବା ଅପେକ୍ଷା ଦେହ ଦେବାରେ ଆଏ ବେଶୀ ଉତ୍ତେଜନା, ବେଶୀ ଉଦ୍ଦାମତା ଆଉ ବେଶୀ ଭାବପ୍ରବଣତା !

ହତବାକ୍ ହୋଇ ମିସ୍ ମୁଖାର୍ଜୀ ମୋ ମୁହଁକୁ ଅନାଇ ରହି କ'ଣ ଯେପରି ଖୋଜୁଥିଲେ । ସତେ ଯେମିତି ମୋ ମୁହଁରେ ସେ ତାଙ୍କର ଅତି ପ୍ରିୟ ଫୁଲଟିଏ ଛନଖ ଲୁଚାଇ ଦେଇଛନ୍ତି ।

× × × ×

ଚାର କେତେଦିନ ପରେ ନିଶିଥର ଏକ ନୀରବ ପ୍ରହରରେ ମିସ୍ ମୁଖାର୍ଜୀଙ୍କ ଅପ୍ରତ୍ୟାଶିତ ଆବିର୍ଭାବ ମୋତେ ଚକିତ କରିଦେଲା । ତାଙ୍କ ମୁହଁରେ ପୂର୍ବର ମାଦକତା ଓ ମନଲୋଭା ଜ୍ୟୋତି କିଛିଟା ମଳିନ ହୋଇ ପଡ଼ିଥିଲା, ଠିକ୍ ଆଶା ଆଉ ଆଶଙ୍କା ଯୁଦ୍ଧର ପୂର୍ବାଭାସ ପରି । ସେ ଘରଆଡ଼କୁ ସତର୍କ ନୟନରେ ଅନାଇ ମୁଁ ଶୋଇଥିବା ଖଟ ନିକଟକୁ ଲାଗିଆସି ଧିରେ ଧିରେ କହିଲେ— : ସେଦିନର କୌଣସିଟା ଯୁକ୍ତି ଉପରେ ମୁଁ ଆସ୍ଥାବାନ ହୋଇପାରୁନି । ଥିଓରି ଓ ପ୍ରାକ୍ଟିକାଲ୍—ଏ ଦୁଇଟା ସର୍ବଦା ସାଙ୍ଗୋପାଙ୍ଗ । ମୁଁ ଠିକ୍ କରିଛି ତୁମକୁ ଦେହ ଦେବି ଆଉ ଆମ ବିବଦମାନ ଯୁକ୍ତିଗୁଡ଼ିକର ସତ୍ୟତାର ହିସାବ ନିକାଶ କରିବି ।

ମୁଁ ହସି ହସି କହିଲି—

ବାଧ୍ୟ ବାଧକତାରେ ଦେହ ଦେବା ନେବାର ଅନ୍ୟ ନାମ ପାଶବିକତା ।

ଏ ପରୀକ୍ଷା ପଦ୍ଧତି ମଧ୍ୟ ମୋଟେ ଫଳପ୍ରସୂ ନୁହେଁ । ଉତ୍ତେଜନା, କାମନା ରହିତ ଏହା ଏକ ଭ୍ରାନ୍ତ ପରିକଳ୍ପନା ମାତ୍ର । ଉଚ୍ଛୃଙ୍ଖଳ କାମୁକ ମନର ଏବଂ ବିକାରଗ୍ରସ୍ତ ମସ୍ତିଷ୍କର ସାମୟିକ ଉନ୍ମାଦନାର ଏସବୁ ଗୋଟିଏ ଗୋଟିଏ ନଗ୍ନ ଉଦାହରଣ ବ୍ୟତୀତ ଆଉ କିଛି ନୁହେଁ । ମିସ୍ ମୁଖାର୍ଜୀଙ୍କ ସୁକୋମଳ ହୃଦୟର କେଉଁ ସୂକ୍ଷ୍ମତନ୍ତ୍ରୀରେ ଅସ୍ବନକ ଆଘାତ ଲାଗିଲା ବୋଧହୁଏ । ସେ ଚମକି ଉଠିଲେ ଆଉ ପରାସ୍ତ ସୈନିକପରି ଏକ ପ୍ରକାର କାନ୍ଦି କାନ୍ଦି ମୋ ପ୍ରକୋଷ୍ଠରୁ ନିଷ୍କ୍ରାନ୍ତ ହୋଇଗଲେ ।

× × × ×

ବେଶ୍ କିଛିଦିନ ପରେ ମିସ୍ ମୁଖାର୍ଜୀଙ୍କଠାରୁ ଖଣ୍ଡିଏ ଚିଠି ପାଇଲି । ଲେଖାଥିଲା—

: ଆମ ଉଭୟଙ୍କ ଯୁକ୍ତି ସମ୍ପୂର୍ଣ୍ଣ ଭ୍ରମମୂଳକ । ଏ ଭିତରେ ସ୍ୱୈର ନାୟିକା ସାଜି ମୁଁ ଅନେକଙ୍କୁ ଦେହ ଦେଇଛି । କିନ୍ତୁ ଦେହ ଦେବା ନେବାରେ କାହିଁ ଉତ୍ତେଜନା, କାହିଁ ଶିହରଣର ଉନ୍ମାଦନା, ଯେତିକିଟା ଥାଏ ମନ ଦେବା ନେବାରେ ।

ମୁଁ ତୁମକୁ ମନ ଦେଇଛି ।

ସେଇଠି ହିଁ ମୋର ଅସୀମ ଆନନ୍ଦ, ଅଜସ୍ର ଶାନ୍ତି ଆଉ ଅପର୍ଯ୍ୟାପ୍ତ ପରିତୃପ୍ତି !



# କଞ୍ଚା ବେପାର



## ଅଧ୍ୟାପକ କୁଳମଣି ମହାପାତ୍ର

କଥାରେ ଅଛି ବାଣିଜ୍ୟେ ବସନ୍ତି ଲକ୍ଷ୍ମୀ । ହଜାର ଚାକିରି କୁହ । ସେଥିରେ ମହକ ନଥାଏ । ଉପରେ ହାକିମଙ୍କ ଅନୁସରଣିଆ ହୋଇ ମୁଣ୍ଡିଆ ମାରି ମୁଣ୍ଡ ଚନ୍ଦା ହୋଇଯାଏ । ତେଲ ଲଗାଇ ଲଗାଇ ହାତ ବିନ୍ଧି ହୋଇଯାଏ । ଆଜିକାଲି ପୁଣି ସରକାରୀ ଚାକିରୀରେ ଯେଉଁ କେତେ ଜଣ ହାକିମ - ଚାକିରି ବାହାରୁଛନ୍ତି ତାଙ୍କ ଗୁଣ ବା କିଏ ଗାଇବ । ସରକାରଙ୍କ ପୋଷ୍ୟପୁତ୍ର ପରି ତାଙ୍କ କାରବାର । ଏକା ଖାଇବେ କାହାକୁ ନ ଦେବ—ଏଇ ହେଲା ତାଙ୍କ ନୀତି । ଏକଥା ଦେଖି ଦେଖି ଆଉ ସରକାରୀ ଚାକିରୀ କରିବାକୁ ମନ ବଳିଲା ନାହିଁ । ଭାବିଲି ବାଣିଜ୍ୟ କରିବି । ଆମ ଗାଁରେ ଏକାଦୁଇ ପଣ୍ଡା ଦୋକାନ କରି କୋଠା ତୋଳିଲେଣି । ପରଶୁ ସାମଲ ଟିକିଟି ମାଟି ଦର ଖଣ୍ଡେ କରି ଯେଉଁ ଆଡ଼ା ଜମାଇଛି କିଏ କହିବ । ତାର ପୁଣି ଦି'ଟା ରେଡ଼ିଓ । ଗାଁ ବିଲରେ ଜମି କିଣା ହେଉଛି । ଏସବୁ ଦେଖି ମନଟା ନିତାନ୍ତ ଗଲ୍ କଲା । ଯାହା ହେବ ହେବ ବେପାର କରିବି । ମା କଟକ ଚଣ୍ଡୀଙ୍କୁ ଭୋଗ ମାନି ବେପାର ପଥରେ ଆଗେଇ ଗଲି । ଏ ବିଷୟରେ କାହାକୁ ବା ପଚାରିବି । ଆମ ସାହିର ପ୍ରଫୁଲ୍ଲ ନନ୍ଦ ମାଟ୍ରିକ୍ ପାଶ କରି ଚାକିରି ନ ପାଇ ବରା ଛାଣୁଛି । ସେ ତ ଶିକ୍ଷିତ ପିଲା । ସେଇଆକୁ ପଚାରିଲେ ହେବ । ସବୁ ଦିନେ ପ୍ରଫୁଲ୍ଲ ଦୋକାନରେ ବସି ମୁଁ ଚାହା ପିଏ । ବରା ଖାଏ । କେତେ ସମ୍ମାନ ସେ ଦେଖାଏ । ମୁଁ ବି. ଏ. ପାଶ୍ କରିଛି ବୋଲି ମୋତେ ବେଳେ ବେଳେ ସାର୍ ବୋଲି ଡାକି ଦିଏ । ମୋର ଛାତି କୁଣ୍ଡେ ମୋଟ ହୋଇଯାଏ । ମୋର ତା' ଉପରେ ଖୁବ୍ ବିଶ୍ୱାସ । ମୋ ପ୍ରସ୍ତାବ ଶୁଣି ପ୍ରଫୁଲ୍ଲ ତାଟକା ହୋଇଗଲା । ମୋତେ ଗାଢ଼େଇ ଗାଢ଼େଇ ଚାହିଁଲା । ମୁଁ ଚଟକରି ତା ମନ କଥା ବୁଝି ନେଇ କହି ପକାଇଲି, ଆରେ ପ୍ରଫୁଲ୍ଲ ତୁ କ'ଣ ଭାବୁଛୁ । ଏଇ ଶୁକୁ ନଈ କୂଳରେ ଆଉ ଗୋଟିଏ ବରା ଦୋକାନ ବସାଇ ତୋ ସାଙ୍ଗରେ କମ୍ପିଟ୍ କରିବି ? ସେ କଥା ନୁହେଁ । ତୁ ଭଲ ଶିକ୍ଷିତ ପିଲା । ବରା ବ୍ୟବସାୟକୁ ଲୋକପ୍ରିୟ କର । ମୋର ପନ୍ଥା ଅଲଗା । ମୁଁ କରିବି ଗୋଟାଏ କଞ୍ଚା ବେପାର ।

ଗନ୍ଧ କାଟିଲା ପରେ ଉପରୁ ପଡ଼ିଲା ପରି ହୋଇ ପ୍ରଫୁଲ୍ଲ କହିଲା କ'ଣ ? କବି ବେପାର ? କାହିଁ ଏପରି ବେପାର ନାଁ ତ ମୁଁ କାନ ଉଠିଲା ଦିନୁ ଶୁଣି ନାହିଁ । ତମେ କଣ ସତକୁ ସତ କବିବୁଢ଼ାଙ୍କୁ ଟୋକେଇରେ ପୂରାଇ ଗାଁ ଗାଁ ବୁଲି ବେପାର କରିବ ? ମୁଁ କୃତ୍ରିମ ରାଗ ଦେଖାଇ କହିଲି ଥଟ୍ଟା କରେ । କବିମାନଙ୍କୁ ଟୋକେଇରେ ପୂରାଇ ମୁଁ ବୋହିବି କାହିଁକି ? ଏପରି ମନ୍ତ୍ର ବୋଲିବି ଯେ ଜୀଅନ୍ତା ହେଉ, ମଲା ହେଉ, ସବୁ କବିତକ ଆସି ମୋ ଘରପାଖରେ ଖାଲି ଡିଆଁ ମାରିବେ । ସେଇଠୁ ମୋ ଇଚ୍ଛା ଅନୁସାରେ ସେଥିରୁ ଉଜ ଘୁରଟାଙ୍କୁ ବାଛି ବେପାର ଚଳାଇବି । କାଉଁରୀ ହାଡ଼ ସାହାଯ୍ୟରେ ଝୁନୁମଣି ନାଚ ଦେଖାଇବି ।

ପ୍ରଫୁଲ୍ଲ ତଥାପି ବୁଝି ପାରିଲା ନାହିଁ । କହିଲା କବିମାନେ ତ ଆଳୁ ସାରୁ, ମୂଳା ବା ଓଲ୍ଅ ଭଳି ପରିବା ନୁହଁନ୍ତି । ସେମାନେ ହେଉଛନ୍ତି ମନୁଷ୍ୟ । ଏପରି କି ସାଧାରଣ ମନୁଷ୍ୟଠାରୁ ଥୋଡ଼ାଏ ବି ବଡ଼ ହୋଇପାରନ୍ତି । କାରଣ ସେମାନେ ଦ୍ରଷ୍ଟା ଓ ସ୍ରଷ୍ଟା । ଧାଇଁକରି ମୁଁ ମାଡ଼ି ବସିଲି । କଥାର ମର୍ମଟା ରହିଲା, ସେଇଠି ।

ସେଇଥିପାଇଁ ମୁଁ ଏ ବେପାର ଆରମ୍ଭ କରୁଛି । କବିମାନଙ୍କଠାରେ କେତେକ ଅତ୍ୟାଶ୍ଚର୍ଯ୍ୟ ଗୁଣ ଥିବାରୁ ଜନସାଧାରଣ ସେମାନଙ୍କ ପ୍ରତି ଆକୃଷ୍ଟ ହୁଅନ୍ତି । ଅତଏବ ସେମାନଙ୍କୁ ନେଇ ବେପାର କରିବା ଲାଭଜନକ । ତେବେ ଆଞ୍ଚଳିକ ଭିତ୍ତିରେ କବିମାନଙ୍କର କାଟତି ଖୁବ୍ ଭଲ ହେବ । ବ୍ରହ୍ମପୁର ଅଞ୍ଚଳରେ ଉପେନ୍ଦ୍ର-ଭଞ୍ଜ, କୋଟପଦା ଓ ନୁଆଗାଁ ଅଞ୍ଚଳରେ ବୈଷ୍ଣବ ପାଣି, କୁସୁପୁର, କାଳିଚନ୍ଦ୍ର-ପୁର ଅଞ୍ଚଳରେ ନନ୍ଦକିଶୋର, ବରପାଲି ଅଞ୍ଚଳରେ ଗଙ୍ଗାଧର, ବାଲେଶ୍ୱରରେ ରାଧାନାଥ ଓ ଫକୀରମୋହନ ଇତ୍ୟାଦି······ଦେଖି କରି ବାଛିବାକୁ ହେବ । ସେହି ଅଞ୍ଚଳରେ ସେମାନଙ୍କ ଜନ୍ମ ଜୟନ୍ତୀ, ମରଣ ଜୟନ୍ତୀ ଇତ୍ୟାଦି ପାଳିବାକୁ ହେବ । ସେଥିପାଇଁ ମୁଁ ସ୍ଥାୟୀ ସମ୍ପାଦକ ଆସନ ଗ୍ରହଣ କରି ଯାବତଚନ୍ଦ୍ରାର୍କେ କବିମାନଙ୍କର ଶ୍ରାଦ୍ଧ କରିବି ବୋଲି ଡେଙ୍ଗୁରା ବଜାଇ ଘୋଷଣା କରୁଛି ।

ପ୍ରଫୁଲ୍ଲ ପଚାରିଲା ଆପଣ ଯଦି ହବୁ ସଙ୍ଘରେ ପଇସା ଦିଆ ମେମ୍ବର ହେବେ ତେବେ ତ ଆପଣଙ୍କ ଉପରେ ବଡ଼ ଚାପ ପଡ଼ିଯିବ । ହାତରୁ ଶହ ଶହ ଟଙ୍କା ମଧ୍ୟ ଖସିଯିବ । ଆପଣ ଶେଷକୁ ଦେବାଳିଆ ହୋଇ ଜମିବାଡ଼ି ବିକିବେ । ତାପରେ ଖାଇବାକୁ ନ ପାଇ ମରିଯିବେ । ଏ ପ୍ରଫୁଲ୍ଲ, କଣରେ ଚିହ୍ନିଛୁ ମୋତେ ? କଥାରେ କହନ୍ତି ବାଇଗଣ ପୂଆ, ବ୍ରାହ୍ମଣ ଝିଅ କେବେ ହେଲେ ମରିବେ ନାହିଁ । ମୁଁ ମରିବି ? ମୁଁ ପରା ସମସ୍ତଙ୍କ ଶ୍ରାଦ୍ଧ କରିବାକୁ ଅଛି । ମୁଁ ଯଦି ଶହେ ଟଙ୍କା ଦେବି ପାଞ୍ଚ ଶହ ଟଙ୍କା କିପରି ଆସିବ ତାର ବାଟ ରଖିଛି । ଯେ ଗାଣ୍ଡି ମୁଣ୍ଡ ପିନ୍ଧିଛି ସେ ଏକ କରିବା ପାଇଁ ବାଟ ରଖି ନାହିଁ ? କିନ୍ତୁ ପ୍ରଥମେ ପ୍ରଚାରିତ ହୋଇଯିବ ସଂପାଦକ ବାବୁ ପାଞ୍ଚଶହ ଟଙ୍କା କବିଙ୍କ ପାଣ୍ଠିକୁ ଦାନ କଲେ । କହୋ ନଟନ

ତୁମେ ବୁଝିପାରୁ ନାହଁ କି ? କେଉଁଠି ମୁଣ୍ଡିଲେ ସିନା ଶେଷହେଲ ଧରିବ । ପାଞ୍ଚଶହ ଟଙ୍କା ଦେଇଛ ବୋଲି ସିନା ଲୋକେ ଜାଣିଲେ, କିନ୍ତୁ ଟଙ୍କାଟା ଏପାଖରୁ ଯାଉଛି କି ସେପାଖରୁ ଯାଉଛି ତାର ହିସାବ ରଖୁଛି କିଏ ? କଥାଟା ବୁଝ ।

ହଁ, ଆଜିର ଗୋଟାଏ ଗୁଣ ହାସଲ ନକଲେ କବି ପ୍ରତିଭାର ଉପଯୁକ୍ତ ପୂଜାରୀ ବୋଲି ଲୋକେ ଗ୍ରହଣ କରିବେ ନାହିଁ । କବିଙ୍କ ପ୍ରତି ବିନମ୍ର ଶ୍ରଦ୍ଧାଞ୍ଜଳି ଦେଇ ଚକ୍ଷୁ ଦୁଇଟିକୁ ଲୋତକାପ୍ଲୁତ କରିବା ପାଇଁ ଯାହା କିଛି ସାଧନା ଓ ଅଭ୍ୟାସ ଦରକାର ତାହା ଆପ୍ରାଣ ଚେଷ୍ଟାକରି ହାସଲ କରିବାକୁ ପଡ଼ିବ । ଏଥିପାଇଁ ଗ୍ରାହକର ଏକ ରସିକ ଅନ୍ତର ଦରକାର । ତୁମେ ଆଶ୍ଚର୍ଯ୍ୟ ହେବ, ଏ ବିଷୟରେ ମୋର ଦଖଲ ପ୍ରାୟ ଆସିଗଲାଣି । ଭକ୍ତପ୍ରେମୀ ବୋଲି ଗ୍ରାମ୍ୟଘାଟରେ ଗ୍ରନ୍ଥ ବୋଲି ବୋଲି ଯାଇପାରିବ । ପାଣିଙ୍କ ଭକ୍ତ ରୂପେ ପରିଚିତ ହେବାପାଇଁ, ହାଟ, ବଜାର ଚାହାଦୋକାନ, ସ୍କୁଲ, କଚେରୀ ନଦୀକୂଳ ଓ ତରୁମୂଳ—ସବୁଠାରେ ପାଣିଙ୍କ ଦୁଆଙ୍କ ଗୀତ, ଭକ୍ତଗୀତ, ପ୍ରୀତିଗୀତ, ରଜାଙ୍କ ଘୋଷଯାତ୍ରା, ରାଣୀଙ୍କ ଶୋକ ସଙ୍ଗୀତ ଇତ୍ୟାଦି ଇତ୍ୟାଦି ବୋଲି ବୋଲି କମ୍ପାଇ ଦେବ । ଦରକାର ପଡ଼ିଲେ ଡାକ ପକାଇବାକୁ ମଧ୍ୟ ପଶ୍ଚାତ୍ପଦ ହେବ ନାହିଁ । ଏପରି ସ୍ଥଳେ କିଏ ମୋତେ ଅବିଶ୍ୱାସ କରିବ କୁହ ।

ଏଇଠୁ ହେବ ମୋର ବେପାରର ଜୟଯାତ୍ରା ଆରମ୍ଭ । ତାପରେ ମୋ ଝିଅକୁ ନଚାଇବି ଓଡ଼ିଶୀ ନାଚ । ପୁଅକୁ ଡ୍ରମବାଦକ ଧରାଇବି । ମୁଁ ନିଜେ ହାରମୋନିୟମ ଧରି ପାଲଧରିବି । କୁବୁଜ ବଜାଇବି, ତାଳଦେବି । ଅତଏବ ମୋ ଠାରୁ ବଳି କବିଙ୍କର ପ୍ରିୟବ୍ୟକ୍ତି ଆଉ କେହି ନାହିଁ ବୋଲି ସାଧାରଣଙ୍କ ଧାରଣା ହୋଇଯିବ । ତମେ ମିଛ ବୁଝିବ ପ୍ରଫୁଲ୍ଲ ଏଥିରେ ଲାଭଟା ନିତାନ୍ତ ମନ୍ଦ ନୁହେଁ । ଦିନ ପ୍ରତିଦିନ ଧରି ଖବର କାଗଜରେ ନାଁ ବାହାରିବ । ଯେ ଜାଣିନଥିବ ସେ ଜାଣିବ । ମୋ ଝିଅର ନୃତ୍ୟ ଲୋକଙ୍କ ମନରେ ଖେଳାଇ ଦେବ ଉନ୍ମାଦନା । ମୋର ବ୍ୟଗ୍ରତା ଓ ଉତ୍କଣ୍ଠା ସାରା ଦେଶରେ ଆଲୋଚନାର ବସ୍ତୁ ହୋଇଉଠିବ । ତା ପରେ ଆରଥରକୁ ମୁଁ ରାଜ୍ୟସଭା ହେଉ ବା ପଞ୍ଚାୟତ ହେଉ ଯେ କୌଣସି ସ୍ଥାନକୁ ଯିବାପାଇଁ ସୁବିଧା ପାଇବି । ମୁଁ ହେବି ଏକାଧାରରେ କବି, ଗ୍ରାହକ, ସଙ୍ଗୀତଜ୍ଞ, ନାଟ୍ୟଜ୍ଞ, ରାଜନୀତିଜ୍ଞ ଓ ଅର୍ଥନୀତିଜ୍ଞ ।

ଟିକିଏ ଗମ୍ଭୀର ହୋଇ କହିଲି " ପ୍ରଫୁଲ୍ଲ, ଆଜି ମୋର ସେହି ଅତୀତର କଥା ମନେ ପଡ଼ୁଛି । ଆଃ ସେ ସ୍ୱପ୍ନ ! ପ୍ରଫୁଲ୍ଲ, ଆଁ କରି ଅନାଇ ରହିଲ । ମୁଁ କହିବାକୁ ଲାଗିଲି । ସେଦିନ ସ୍ୱୟଂ ବୈଷ୍ଣବ ପାଣି ଆସି ମୋତେ ସ୍ୱପ୍ନରେ କହିଲେ, ବତ୍ସ, ଆଉ ଡେରି କରିଛ ! ମୁଁ ବ୍ରାହ୍ମଣକୁ ତୁ କି ବ୍ରାହ୍ମଣ । ମୁଁ ଯେପରି ଅଣ୍ଡା ଗଣ୍ଡେଇ, ମଦ ଖାଉଥିଲି ତୁ' ବି ଖା' । ମୁଁ ହାର ଧୋବଣୀକୁ ରଖିଥିଲି ତୁ ଚେଙ୍ଗ ଚମାରୁଣୀକୁ ରଖ । ମୋ ଠାରୁ ତୁ ଆହୁରି ଆଗେଇ ଯା । ତୋର ଭବିଷ୍ୟ ଅଛି ।

ଗ୍ରଣ୍ଡିସ୍ ଅଛି । ଯିବା ଆସିବା ପାଇଁ ମଟର ଗାଡ଼ି ଅଛି । ପାଖେ ପାଖେ ସ୍ୱେଚ୍ଛା-ସେବିକାମାନେ ବି ଅଛନ୍ତି । ପାଖରେ ଯଥେଷ୍ଟ ସମୟ ଅଛି । ଗାଁ ଲୋକଙ୍କୁ କିଛି ଦାନ ଖଇରାତି କରି ପାଖରେ ରଖିବେ । ହଁ, ମୋ ଜୟନ୍ତୀକୁ ଗୋଟାଏ ଜାଗାରେ ସବୁବେଳେ କରିବାକୁ ଚେଷ୍ଟା କରିବୁ ନାହିଁ । କାରଣ ବର୍ଷେ ଗୋଟାଏ ସ୍ଥାନରେ ଜୟନ୍ତୀ ପାଳନ ହେଲେ ପରବର୍ଷକୁ ଆଉ ସେ ଗାଁରେ ମୁହଁ ଦେଖାଇବାକୁ ସାହାସ ହେବ ନାହିଁ । ତୋ'ର କେତେଟା ସୁକର୍ମକୁ ସେଠିକାର ଲୋକେ କୁକର୍ମ ବୋଲି ଭାବି ତୋତେ ଥଣ୍ଡା କରିବେ । ପଛରୁ ହୁଇସିଲ ମାରିବେ । ମନେରଖ ଜୟନ୍ତୀ ପରଦିନ ବଡ଼ି ଭୋରୁ ତୋର ଝିଅ ଓ ପୁଅଙ୍କୁ ଧରି ଶହେ ମାଇଲ ବେଗରେ ମଟର ଚଳାଇ ଗାଁକୁ ପଳାଇବୁ । କାରଣ ନୀତି କହୁଛି, ଯଃ ପଳାୟତି ସ ଜୀବତି । ତୁ ଯଦି ଶୀଘ୍ର ନପଳାଇବୁ ତେବେ ସେ ଇସ୍କୁଲିଆ ଟୋକାମାନେ ଢେଲମାରି ତୋ ଚନ୍ଦା ମୁଣ୍ଡକୁ ଫଟାଇ ଦେଇ ପାରନ୍ତି ।

ତେଣୁ ପ୍ରତିବର୍ଷ ଜୟନ୍ତୀର ଜାଗା ବଦଳାଇବୁ ଓ ପୁଣି ନୂତନ ରାସ ଆରମ୍ଭ କରିବୁ ।

ପ୍ରଫୁଲ୍ଲ ମୋ କଥା ଶୁଣି ଘବଡ଼େଇଗଲା । ମୋ ଦୃଷ୍ଟିର ନୂତନ ଆଭିମୁଖ୍ୟ ତାକୁ ମନ୍ତ୍ରମୁଗ୍ଧ କରିଦେଲା । ସେ ବିଛଣା ଛାଡ଼ି ମୋ ଗୋଡ଼ତଳେ ଲମ୍ବହୋଇ ପଡ଼ିଗଲା । ଗଦ୍‌ଗଦ୍ ହୋଇ କହିଲା ।

ହେ ମହାତ୍ମା, ହେ ଚତୁର, ହେ ଶଠ, ନିପଟ ଧୂର୍ତ୍ତ, ଧନ୍ୟ ତୁମର କଳ୍ପନା ଶକ୍ତି । ତୁମେ କବିଙ୍କୁ ନିହାଲ କରିବା ସଙ୍ଗେ ସଙ୍ଗେ ନିଜର ଆତ୍ମ ପ୍ରତିଷ୍ଠା ମଧ୍ୟ କରିପାରୁଛ । ଠାକୁର ଦେଖାକୁ ଠାକୁର ଦେଖା, କଦଳୀ ବିକାକୁ କଦଳୀ ବିକା—ଏ ଦୁଇ ମହାନ୍ କର୍ମକୁ ଏକ ସଙ୍ଗରେ କରିପାରିଥିବାରୁ ମୁଁ ତୁମକୁ କେତେକ ବୋଲୁଅ ଓ ଫେଫଡ଼ା ଉପହାର ଦେବି । ମୋର ବିଶ୍ୱାସ ଏ ଜୟନ୍ତୀଷ୍ଟମାନେ ସମସ୍ତେ ତୁମକୁ ତାହାହିଁ ଉପହାର ଦେବେ । ତୁମେ ଧନ୍ୟ, ଧନ୍ୟ, ଯଇତାନ, ମଦନମୋହନ କୋରୁଖିଆ ଫଳ ସମାନ । ତୁମର ନାମରେ ଦୋମୁହାଁ ସାପ ଓ ଦସିପୋକଯାକ କରିବେ ସଦା କୀର୍ତ୍ତନ ।

ତୁମେ ଅଣ୍ଡିରା କୋକିଳ, ତୁମେ ଦେବ ମାଇଭାଲୁ,
ଓଲୁଅ ସାଙ୍ଗକୁ ବରିଯାରୁ ତୁମେ ଯାହାକୁ କହନ୍ତି ସ୍କୁଲ୍ ।
ତୁମ ଗାଡ଼ି ଚକଚକିଆ, କେବେ ନୁହଁ ତୁମେ ଭକୁଆ
ଚୁଙ୍ଗଚୁଙ୍ଗିଆ କୁଞ୍ଚ କୁଞ୍ଚିତ ଫଙ୍ଗୀଆ ରସିକଲୋକିଆ ।
ପ୍ରତ୍ୟେକ ସଭାରେ କେବେ ସମ୍ପାଦକ କେବେ ପୁଣି ସଭାପତି
ଜା'ର ଧରିଣ ବାହାର ହୋଇଲେ କିଏ ଯିବ ତୁମ କତି ।

ପ୍ରଫୁଲ୍ଲର ସ୍ତୁତିରେ ବାସ୍ତବିକ ମୁଁ ଖୁସି ହୋଇଗଲି । କହିଲି ପ୍ରଫୁଲ୍ଲ କ ବର ମାଗୁଛ ମାଗ । ପ୍ରଫୁଲ୍ଲ କହିଲା ହେ ଭାଇନା, ହେ ପ୍ରଭୋ, ମୋର କିଛି ଦରକାର

ନାହିଁ । କେବଳ ଉଦ୍‌ବମାନଙ୍କ ଜୟନ୍ତୀରେ ମୋତେ ଗୋଟିଏ ସ୍ୱେଚ୍ଛାସେବକ ବନାଇଦେବ । ଆଉ ଯାବତୀୟ ଗୁହା ଜଲଖିଆ ମୋ ଦୋକାନରୁ ନେବ, ଏଇ ସାମାନ୍ୟ କଥା ? ମୁଁ ହଠାତ୍ ଖୁସି ହୋଇଗଲି । କହିଲି ପ୍ରଫୁଲ୍ଲ ନେ ଆଗତୁରା ୫୧୦୧ ରଖ, ବଇନା ରହିଲା । ସବୁ ଜୟନ୍ତୀରେ ତୁ ହେବୁ ପରମ ନେଣ୍ଟ କୋଷାଧ୍ୟକ୍ଷ । ଭଦ୍ରଲୋକ ଓ ଭଦ୍ର ମହିଳାଙ୍କ ଚର୍ଚ୍ଚା କରିବୁ ତୁ । ଝିଅପିଲାମାନେ ଡ୍ରେସିଂ ହେଲାବେଳେ ଗ୍ରୀନ୍ ରୁମରେ ପ୍ରବେଶ କରି ପାରିବୁ ତୁ । ତୋ ବରା ସୁପର ବରା । ତୋ ଗୁହା ଜଲନିଧି ମାର୍କା ଗୁହା । ତୁ ସାଧୁ, ସନ୍ଥ, ଭଦ୍ର, ବିନୟୀ ହାସ୍ୟରସିକ, ଅବିବେକୀ, ଅତାଡ଼ୁ, ଅଖାଡ଼ୁଆ ନେତା ଓ ଅଣ୍ଡିରା । ତୋତେ ମୁଁ ଅଭୟ ଦେଉଛୁ । ଅବିଳମ୍ବେ ତୋର ପ୍ରମୋଶନ ହେବ; ମୋ ପ୍ରମୋଶନ ଲୋକଙ୍କ ସଭାରୁ ଓ ତୋର ପ୍ରମୋଶନ ଲୋକଙ୍କ ସଭାରୁ ।

ପ୍ରଫୁଲ୍ଲ କହିଲା ସାର୍ ଏତେ ଗୁଡ଼ାଏ ପ୍ରଶଂସା ମୁଁ ସହିପାରୁନାହିଁ । ବାଉଁଶ ଅଗରେ ଟେକିଲେ ମୋତେ ଶୂଳୀରେ ବସିଲା ପରି ଲାଗୁଛି । ମୁଁ କହିଲି ପ୍ରଫୁଲ୍ଲ, ବେଧଡକ ହୋଇ ବସ । ଏଇ ବରା ଦୋକାନ କରି ତୁ କୋଠା କରିବୁ, ପାଣିଆ ଗୁହା ଦେଇ ବଶିଷ୍ଟ ବ୍ୟବସାୟୀ ବୋଲାଇବୁ । ମୁଁ ଯେପରି ଉପେନ୍ଦ୍ରଭଞ୍ଜ, ବୈଷ୍ଣବ ପାଣି, ନନ୍ଦକିଶୋର ଓ ପ୍ୟାରୀମୋହନଙ୍କ ଧରି ଥୋଡ଼ାଏ ନାଁ କଲିଣି ତୁ ବି ସେହିପରି କରିବୁ । ପ୍ରଥମେ ଗାଁ'ବାଲାଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେମାନଙ୍କୁ ପୃଥିବୀର ସର୍ବଶ୍ରେଷ୍ଠ କଳାକାର, ପ୍ରେମିକ ଓ ଗୁଣ୍ଡାବୋଲି ପ୍ରମାଣିତ କରିବ । ଧାନ, ଚାଉଳ, ମୁଗ, ବରି, ଟଙ୍କା ପଇସା ଆଦି ଦେଇ ହାତରେ ଗୋଟାଏ ପ୍ରଚାରକ ଦଳ ରଖିବ ।

ପ୍ରଫୁଲ୍ଲ ଏତେବେଳକୁ ଭକୁଆଙ୍କ ପରି ବସିଲାଣି । ମୋ ବକ୍ତୃତାର ଗ୍ରାଣ୍ଡିସ୍ ସେ ବୁଝିବ କୁଆଡ଼ୁ । କବିଙ୍କ ନାଁରେ ତାଙ୍କୁ ଯେ ମୋ ଖୁଅଡରେ ପଶିବାକୁ ବାଧ୍ୟ ହେବାକୁ ପଡ଼ୁଛି । ଏ ମହାତତ୍ତ୍ୱ ସେ ବୁଝିବ କୁଆଡ଼ୁ । କାର୍ଯ୍ୟ ସଫଳ ହେବାକୁ ଯାଉଥିବା ଦେଖି ତୃପ୍ତିର ହସଟିଏ ହସି ମଟରଟେ ଷ୍ଟାର୍ଟ ଦେଲି । ମଟର ଭିତରେ ପଶିବା ଆଗରୁ ବୈଷ୍ଣବ ପାଣିଙ୍କ ଦୁଆରୀ ଗୀତଟି ବୋଲି ଦେଲି । ମୋ ଗୀତ ଶୁଣି ସେ ସ୍ଥାନର ଯେତେକ ଛେଳି ମେଣ୍ଢା, ଘୁଷୁରି ଓ ବାଈପଲ ଥିଲେ ସମସ୍ତେ ଚକିତ ହୋଇ ଅନାଇବାକୁ ଲାଗିଲେ । ଜୟମା ବୈଷ୍ଣବ ପାଣି କହି ମଟର ଛାଡ଼ିଦେଲି ।



# ସମୁଦ୍ର

● ଅଧ୍ୟାପକ ସତ୍ୟନାରାୟଣ ମହାନ୍ତି

ସମୁଦ୍ର ଆଜି ମୋତେ ଆଶ୍ଚର୍ଯ୍ୟ କଲା । ଉତ୍ତାଳ ତରଙ୍ଗର ସମସ୍ତ ଐଶ୍ୱର୍ଯ୍ୟ ନେଇ ସେ ଯେପରି ଦାବି କରୁଥିଲା ମୋତେ ନୂଆ କରି ଦେଖ । ମୁଁ ଝାଉଁଗଛମାନଙ୍କ ତଳେ ଶୋଇ ଶୋଇ ପତ୍ର ଫାଙ୍କରେ ଆକାଶକୁ ଦେଖୁଥିଲି—ଆକାଶର ନୀଳିମା ଯେଉଁଠି ଜମାଟ ବାନ୍ଧିଛି । ଝାଉଁରୁ ଆସୁଥିବା ସଙ୍ଗୀତ ଯେପରି ଆକାଶର ନୀଳିମା ଛୁଉଁଛି— ଗୃହ ପାଖରେ ଏବେ ତେଣେ ବୋଝେଇ ପାଇଁ ଜିନିଷ—ଚୁଲି ଉପରେ ହାଣ୍ଡି -ମଣିଷର ଏକାନ୍ତ ଅପରିହାର୍ଯ୍ୟ ଜୈବିକ ଆବଶ୍ୟକତା ପୂରଣର ଚେଷ୍ଟା ।

କିନ୍ତୁ ସମୁଦ୍ରର ଡାକ ବେଳୁ ବେଳ ବଢ଼ୁଛି—'ବସନ୍ତ' ନୁହେଁ, 'ଆଜି ଅଶାନ୍ତ ଜଗତ ଦ୍ୱାରେ' ମୁଁ ସମୁଦ୍ରକୁ ଅଶାନ୍ତ କହୁଛି—ତାର ଅନ୍ତକାଳୁ ଅଶାନ୍ତ ଯଦି ମୋ ଭିତରର ଅଶାନ୍ତିକୁ ଦମି ପରି ଗ୍ରାସିପାରେ ତେବେ ମୁଁ ସେଇ ଅଶାନ୍ତିର ଆଶିଷ ପ୍ରାର୍ଥୀ ।

ସମୁଦ୍ର କଣ ଖାଲି ମୁକ୍ତିର ପ୍ରତାରଣା ? ନା, ଆଉ ଛୋଟ ଛୋଟ ଢେଉ ନୁହେଁ । ଏଥର ସେଇ ଦୂରରୁ ଭୟଙ୍କର ଶବ୍ଦ ସମୃଦ୍ଧ ଚଳମାନ ପର୍ବତ ପରି ମାଡ଼ି ଆସୁଥିବା ଭୟଙ୍କର ଢେଉଟିକୁ ଏ ପ୍ରଶ୍ନ ପଚାରି ଦେଖେ । ତାର ନିମ୍ନଗାମୀ ସ୍ରୋତର ଲବଣାକ୍ତ ଶୀତଳତା ଗର୍ଭରେ ଯଦି କିଛି ଉତ୍ତର ଥାଏ ।

ବେଳାର ବାଲୁକା—ପୃଷ୍ଠରେ ସେହି ଯେଉଁ ଶିଶୁଟି କୁନି କୁନି ପାଦ ପକାଇ ଆଜି ତାର ଜୀବନର ପ୍ରଥମ ଅଙ୍କ ରଚନା କରୁଛି ସେ କଣ ସେଇ ଅଶାନ୍ତିର ପୁନରାବୃତ୍ତି କରିବ ? ଦିନ ସହିତ ଆଉ ଗୋଟିଏ ଦିନ ମିଶାଇ, ମାସ ସହିତ ଆଉ ଗୋଟିଏ ମାସ ମିଶାଇ ବର୍ଷ ସହିତ ଆଉ ଗୋଟିଏ ବର୍ଷ ମିଶାଇ କେବଳ ବଞ୍ଚି ରହିବାର ସେଇ ସଙ୍କୁଚିତ ଅଭ୍ୟାସ ନିରବଚ୍ଛିନ୍ନ ଯୋଜନା କରି ଚାଲିବ ? ସମସ୍ତ ସ୍ନେହର ପୁଞ୍ଜି ଦେଇ ଅନେକ ଯତ୍ନରେ ମୁଁ ତାକୁ ପୃଥିବୀକୁ ଛାଡ଼ୁଛି—ମାତ୍ର ଭୟ ହୁଏ ମୋର ପ୍ରାଚୀନ ଅସାମର୍ଥ୍ୟର ବୋଝ—ଭଙ୍ଗା ବୋଝ ତା ପିଠିରେ ମୁଁ ବାନ୍ଧି ଦେଇଛି ।

ସ୍ଥା ଭିତରେ ପ୍ରକାଣ୍ଡ ଢେଉଟି ଖର୍ବ ହୋଇ ସାଧାରଣ ଢେଉରେ ପରିଣତ ହେଲଣି । ମୁଁ ଦୂରର ଆଉ ଗୋଟିଏ ବଡ଼ ଢେଉକୁ ଲକ୍ଷ୍ୟ କରୁଥିଲି ଯାହାକି ପ୍ରଚଣ୍ଡ ଶବ୍ଦ କରି ଏ ଆଡ଼କୁ ଆଗେଇ ଆସୁଥିଲା ।

ହେ ସମୁଦ୍ର ! ମହୋଦଧି, ଉଦଧି ଅବା ବାରିନିଧି, ମୁଁ ତୁମର ସମସ୍ତ ସ୍ତୁତି କରୁଛି, ଏ ଶ୍ୱାସରୋଧି ସଙ୍କୋଚ ଓ ସୀମାର ବନ୍ଧନ ଭାଙ୍ଗି ତୁମର ମହାନ ଅଶାନ୍ତିର ସ୍ପର୍ଶ ଦିଅ ।



# ପ୍ରବୃତ୍ତି

● ଶ୍ରୀ କମଳାକାନ୍ତ ପଣ୍ଡା (କଳ୍ପାନ୍ତ)

ଚଳମାନ ୧୯୭୦ ।

ତମେ ଗୋଟିଏ ଗପ କହବ । ଚରିତ୍ରଗତ ନୁହେଁ । ଅଙ୍ଗେ ନଭାଇବା କଥା । ଭାବିଲି ନିଶ୍ଚୟ ଆମେଜ ଥିବ । ତେଣୁ ମୁଁ ଖୁବ୍ ଉତ୍ସୁକ ଆଉ ଆଗ୍ରହୀ ।

ତମେ କହିଲ ଅପେକ୍ଷା କର । ଅଜି ନୁହେଁ । ହୁଏତ ୧୯୮୫ ହୋଇପାରେ । କାରଣ ୧୯୭୦ରୁ ୧୯୮୫ ଏକ ନବପଦ ଦୂରତ୍ୱ । ଗପଟି ଯେହେତୁ ଖୁବ୍ ସାଧାସିଧା, ମାମୁଲି – ତେଣୁ ସୁଦୂରତ୍ୱ ଆରୋପ କରି ଲାଭ କ'ଣ ?

ତାପରେ ଆଲୋଚନା ; ବଜାର ଦର, ଓଡ଼ିଆ ସାହିତ୍ୟ ଓ ମେରାଜନ୍‌ର ମୂଲ୍ୟ, କବିତା ପ୍ରତି ପାଠକମାନଙ୍କ ବୀତସ୍ପୃହା, ପାହାଡ଼ୀ ସାନ୍ୟାଲର ଆତ୍ମହତ୍ୟା, Eugene O'Neill-Audipus Complex, ଆସ୍ପର୍ଯ୍ୟ-ଉର୍ମିଳା, କର, ବୈକୁଣ୍ଠ, ଗୋପୀନାଥ, ପଞ୍ଚାନନ ପ୍ରଭୃତିଙ୍କର ମନୋବୃତ୍ତି···ଇତ୍ୟାଦି··· ଇତ୍ୟାଦି ।

× × × ×

ଗୋଟିଏ ଚିଡ଼ିଆଖାନା ଭିତରେ ମାଙ୍କଡ଼ ଦୁଇଟିଙ୍କର ଅସମ୍ଭବ ବଂଶବୃଦ୍ଧି । ହୁଏତ ସେମାନେ ଗୋଟିଏ ବଂଶଭବ ହୋଇପାରି ଥାଆନ୍ତି । ଏହା କିପରି ସମ୍ଭବ ? ପ୍ରବୃତ୍ତିର ପ୍ରଭାବ ପ୍ରକୃତିରେ କି ଉତ୍କଟ !!! ଏହା କ'ଣ ବୀଭତ୍ସତା ? ନଗ୍ନତା ?? ଅନ୍ୟକୁ ଜଳାଇବାରେ କି ଆତ୍ମତୃପ୍ତି !!!

× × × ×

ପୁଣି ସିନେମା ଖବର । ରେଡ଼ିଓରେ ଗୀତର ଝଙ୍କାର । ଅଲେଇତ ମନ୍ତ୍ରିର ବାର୍ତ୍ତା । ଆଉ ଯୁକ୍ତ ମିନିସ୍କାର୍ଟ ମିନି ମେରାଜନ ପାଇଁ ।

ଇଂଲଣ୍ଡରେ ମିନିସ୍କାର୍ଟ ଲମ୍ବା ହେଲାଣି । କିନ୍ତୁ ଆମେ ତାକୁ ଆହୁରି ଶ୍ରେଟ କରୁଛୁ । ପାଶ୍ଚାତ୍ୟକୁ ଟପି ଗଲୁଣି । କି ଆତ୍ମପ୍ରଶଂସା !!

( —ସେମାନେ ଆଗେଇଥିଲେ ଫେରୁଛନ୍ତି । ଆମେ ଆଗଉଛୁଁ । ତଫାତ୍ ହିଁ ଏଇଠି ! )

ଆଗକୁ ଯିବା ମଣିଷର ଧର୍ମ । ଯୁଗର ଆହ୍ୱାନ । ଆମେ ଆଗେଇଛୁଁ, ଏକ ଅନାବିଳ ପ୍ରବୃତ୍ତି ଉପରେ ଆସ୍ଥା ରଖି । ଆମର ଆସ୍ଥା ଏବଂ ଆନ୍ତରିକତାର ବିସ୍ତୀର୍ଣ୍ଣ ବାଲୁକାପ୍ରାନ୍ତ ଉପରେ ସନ୍ଦେହର କୁନି କୁନି ପାଦର ମଧ୍ୟ ପ୍ରଶ୍ନ ନାହିଁ । ଆଗେଇ

ଯିବାରେ ପ୍ରଚୁର ଆନନ୍ଦ ଅଛି । କେବେ ଆମେ କଣ ସନ୍ତରେ ଫେରି ପାରିବୁ ?? ଫେରିବାରେ ତୁମେ କଣ ସୁଖୀହୋଇ ପାରିବ ???

ହେଇ ଦେଖ – ରାସ୍ତାର ଆଲୁଅ ଗୁଡ଼ିକ କିପରି ହଠାତ୍ ଲିଭିଗଲା । ଓଃ ସେ ପତଙ୍ଗ ଗୁଡ଼ିକ କି ଯନ୍ତ୍ରଣା ପାଉନ'ଥିବେ ସତେ ଏଇ ସୁଯୋଗଟା ତୁମର ଆଲୁଅ ଯଦି ଲିଭିଯାଆନ୍ତା ବେଶ୍ କିଛିକ୍ଷଣ ପାଇଁ, ଅନ୍ଧାରରେ ଜୀବନଟାକୁ ଉପଭୋଗ କରିହୁଅନ୍ତା ସତ; ହେଲେ ଯନ୍ତ୍ରଣାର ଆଧିକ୍ୟ କଣ ଶୂନ୍ୟଡ଼ିଗ୍ରୀ ସେଣ୍ଟିଗ୍ରେଡ଼କୁ କମି ପାରନ୍ତା ???

୧୯୮୫ ଅନେକ ଦୂରରେ । ତାକୁ ଛୁଇଁବାକୁ ଅନେକ ସମୟ ଲାଗିବ । ଏହା ଭିତରେ ଅନେକ କିଛି ଏପଟ ସେପଟ ହୋଇଯିବାର ସମ୍ଭାବନା ପୃଥିବୀରେ ଅଛି । ଆମେ ଅପେକ୍ଷା କରିବୁନି । କାରଣ ଆମର ଗପ ସରିଆସିଲାଣି । ଆଉ ସେ ରାସ୍ତାର ଲାଇଟ୍ ଗୁଡ଼ିକ ହସକୁରା ଝିଅଭଳି ବେଶ୍ ହସିବାକୁ ଆରମ୍ଭ କଲେଣି···

---

# ସଂବାଦ

ଶ୍ରୀ ପ୍ରସନ୍ନକୁମାର ପାଟଶାଣୀ

ଆଜିର ସଂବାଦପତ୍ରର ପୃଷ୍ଠା ଖୋଲିଲାମାତ୍ରେ ଖାଲି ଦେଖିବାକୁ ମିଳେ ହତ୍ୟା, ଲୁଣ୍ଠନ, ଧର୍ଷଣ ଇତ୍ୟାଦିର ଯାବତୀୟ କୁତ୍ସିତପୂର୍ଣ୍ଣ ବିଜ୍ଞାପିକାମାନ ଚର୍ଚ୍ଚା । ହେଇ ଦେଖ, ଉଗ୍ରପନ୍ଥୀମାନେ କିପରି ଜଣେ ନିରୀହ ଯୁବ କନେଷ୍ଟବଲ୍‌ଟିକୁ ହତ୍ୟାକରି ଦେଇ ବିଚ୍ ରାସ୍ତାଉପରେ ଫୋପାଡ଼ି ଦେଇଛନ୍ତି । ଇସ୍, ଯୁବକଲୋକ, ବିଚରା କେତେ କଳ୍ପନା କରି ନ ଥିଲା ! ତା—ସଂସାର ଉଜୁଡ଼ିଗଲା । ତା ପିଲାପିଲି ଭାସିଗଲେ । ଭଦ୍ରଲୋକ ଗପି ଚାଲିଥିଲେ କିନ୍ତୁ ତାଙ୍କ ସାଥିରେ ଥିବା ଅନ୍ୟବନ୍ଧୁ ଜଣଙ୍କର ଅବାଞ୍ଛିତ ପ୍ରଶ୍ନର ଉତ୍ତର ଦେଇ ପାରିନ ଥିଲେ ସେ । ଅଚ୍ଛା, ଆପଣ ଗତକାଲିର ସଂବାଦପତ୍ର ପଢ଼ିଛନ୍ତି ? କଲିକତାର ଗ୍ରୀଷ୍ମାବାସରେ ଆଲାପରତ ଦଶଜଣ ନିରୀହ ଛାତ୍ରଙ୍କୁ ଯେଉଁଭଳି ଜଘନ୍ୟଭାବରେ ହତ୍ୟା କରାଯାଇଛି, ତା ସମ୍ପର୍କରେ କିଛି ଶୁଣିଛନ୍ତି ? ନ-ନା, ତେବେ କୁହନ୍ତୁ ନା ! —ପୋଲିସ ଉଗ୍ରପନ୍ଥୀମାନଙ୍କୁ ଜବତ କରିପାରୁନଥିବାରୁ ବିତସ୍ପୃହ ହୋଇ ଗତକାଲି ଏକ ନିର୍ଜନ କୋଠରୀରେ ଆଲୋଚନାରତ ଦଶଜଣ ନିରୀହ ତରୁଣତରୁଣୀଙ୍କୁ ଝରକାଭିତରେ ବ୍ୟାରେଲ୍ ପୂରାଇ ହତ୍ୟା କରିଛି । ଏଇ ନାରକୀୟ ବର୍ବର ଅତ୍ୟାଚାରର ଅନ୍ୟ ଏକ ପ୍ରମାଣ ହେଲା, ସେମାନଙ୍କ ହାତକୁ ବାନ୍ଧି ରାସ୍ତାକଡ଼ରେ ଫିଙ୍ଗିଦିଆଯାଇଛି । ଗୁଳିବିଦ୍ଧ ଦଶଟି ଶରୀର ଏହାର ଯଥେଷ୍ଟ ପ୍ରମାଣ ଦିଏ । ଏହାଫଳରେ ଯେଉଁ ଦଶଟି ପରିବାର ଭାସିଗଲେ ଏଥିପାଇଁ ଆପଣ କ'ଣ ଚିନ୍ତା କରିଛନ୍ତି ? ଭଦ୍ରଲୋକ ଚୁପ ରହିଗଲେ ଏବଂ କିଛିସମୟ ପରେ କହିଥିଲେ; ଏଇ ଦଶଟି ପରିବାର ପାଇଁ କାଣିଚାଏ ସମବେଦନା ଜଣାଇବା ନିମନ୍ତେ କ'ଣ ସଂବାଦପତ୍ର ପୃଷ୍ଠାର ଅଭାବ ଥିଲା ? ଏ, ଆପଣ କ'ଣ ଜାଣିନାହାନ୍ତି, ସଂବାଦପତ୍ରଗୁଡ଼ିକ ଏ ଦେଶର ପୁଞ୍ଜିପତି ନିୟଂତ୍ରାଧୀନ ସରକାରୀ-କଳ ଦ୍ୱାରା ପରିଚାଳିତ ? ଅସଲ କଥା ଛାପିଲେ ବିଜ୍ଞାପନ ବନ୍ଦ ହୋଇଯିବ ଯେ ...ନା, ଆଜିଠୁଁ ଏ ସଂବାଦପତ୍ର ଆଉ ପଢ଼ିବିନି, ଯାହାକୁ ପଢ଼ିଲାପରେ ମୋଭଳି ନିରୀହ ଲୋକକୁ ବି ଉଗ୍ରପନ୍ଥୀ ହେବାକୁ ଇଚ୍ଛା ହେଉଛି କହି ଭଦ୍ରବ୍ୟକ୍ତି ଜଣକ ସଂବାଦପତ୍ରଟିକୁ ଫୋପାଡ଼ି ଦେଇଥିଲେ ।



# ମୁଁ ମଧ୍ୟାହ୍ନ, ଛାଇ ଓ ଅନ୍ଧାର

● ଅଧ୍ୟାପକ ବୈଷ୍ଣବଚରଣ ସାମଲ

ମୋର ମସ୍ତକ ଉପରେ ସୂର୍ଯ୍ୟର ପ୍ରଚଣ୍ଡ ଜ୍ୱଳନ । ମୋର କପାଳରେ ଧୂ ଧୂ ନିଆଁ ···ଖାଲି ନିଆଁ ···ନିଆଁ ।

ଏହା ମଧ୍ୟରେ ମୁଁ ମୋର ଅନାଘ୍ରାତ ଛାଇର ଛିଟକୁ ପାଦରେ ଚକଟି ଦେଇଛି ।

ମୋର ପାଦତଳେ ସେ ଏବେ ବେଦନାର୍ତ୍ତ ଚିତ୍କାର କରୁଛି । ସେ ଶ୍ୱାସରୁଦ୍ଧ । ନିଆଁ ର ଧାସ ସେ ସହିବାକୁ ଅକ୍ଷମ ।

× × × ×

ମୋ ପକ୍ଷରେ ଏବେ ଉଷାର ଅରୁଣିମା ନାହିଁ । ସଦ୍ୟୋଜାତ ଚକ୍ରର ପେଣ୍ଡୁଲା କ୍ରମେ କ୍ରମେ ବଢ଼ି ଅସ୍ଥି ମାଂସମୟ ହୋଇଛି ।

ମୁଁ ସେଦିନ ଧୋଇଦେଇଥିଲି ଜନନୀର ଜରାୟୁ ଚଣ ଧରଣୀର ଧୂସର ଦେହକୁ , ଧନ୍ତଣୀ ହୋଇଥିଲି କେତେକ୍ଷଣ ପାଇଁ ରକ୍ତସ୍ନାତା । ତା'ପରେ ମୁଁ ଉଠିଲି···ଉଠିଲି ଏବଂ ଧାଇଁଲି ମୋର ଛାଇର ସାଥିରେ ।

ଏବଂ ଛାଇକୁ ମୁଁ ଧ୍ୱଂସ କରିଦେବି । ତାର ଛିଟକୁ ମୋର ଛିଟରେ ଏକାଠି କରିଦେବି । ( ଯେହେତୁ ସେ ମୋତେ ଖୁବ୍ ଦାଉଡ଼ାଇଛି )

ହେ ମୋର ମଧ୍ୟାହ୍ନର ଗର୍ଭବତୀ ଛାଇମାନେ ତମେ ଆଉ ମାତୃତ୍ୱ ଲାଭ କରନା । ତମେ ବରଂ ଭ୍ରୂଣ ହତ୍ୟା କର (ଯେହେତୁ ଏହା ଆଇନ୍‌ସମ୍ମତ) ଅଥବା ବନ୍ଧ୍ୟାତ୍ୱକୁ ବରଣ କର ।

ମୁଁ ଆଉ ଚାହେଁନା ତମ ଛାଇସବୁ ଲମ୍ବିଯାଉ ମୋ ଦେହରୁ ବଳସ୍ଥ ପର୍ଯ୍ୟନ୍ତ ଏବଂ ଛୁଉଁ ପୁଣି ମୋ ପାଦତଳକୁ , ମୋ ପାଦତଳେ ନିଆଁ ର ଉତ୍ତାପରେ ଏବଂ ମୋର ମୁଣ୍ଡ ଉପରେ ଜଳନ୍ତା ନିଆଁ ର ଝୁଲ । ମୋ ଦେହରେ ନିଆଁ ର ପ୍ରଚଣ୍ଡ ଧାସ । ମୁଁ ସିଝୁଛି । ମୁଁ ସିଜୁଛି ଏବଂ ସନ୍ତୁଳି ହେଉଛି ।

ମୁଁ ବର୍ତ୍ତମାନ ଏକ ସ୍ଥିର ବିନ୍ଦୁରେ । ଏଇଠାରେ ମୋର ଛାଇ ଏବଂ ମୁଁ ଏକାକାର ।

ଏ ବିନ୍ଦୁ ମୋ ପକ୍ଷରେ ଅସହ୍ୟ । ଏବଂ ଅସହ୍ୟ ଏକପାଦ ଟେକି ଅନ୍ୟପାଦ ଭୂମିରେ ଥାପିବା ।

ତେଣୁ ମୋର ମଧ୍ୟାହ୍ନର ଅପରାହ୍ନର ଅନ୍ଧକାର । ମୋର ଗ୍ରହର ଗଢ଼ ତେଣୁ ପୂର୍ବରୁ ପଶ୍ଚିମକୁ । ପଶ୍ଚିମକୁ ଏବଂ ତାର ସୁଦୂର ଅସୀମ ଅନ୍ଧକାରର ଦିଗ୍‌ବଳୟକୁ ।

ତାପରେ ଗ୍ରହ ଆଉ ମୁଁ, ମୁଁ ଆଉ ଗ୍ରହ, ଗ୍ରହ ମୁଁ ମୁଁ ଗ୍ରହ·· ଗ୍ରହ ଗ୍ରହ···ଅନ୍ଧକାର ମୁଁ ଅନ୍ଧକାର··· ।

# ଯାତ୍ରା

● ଶ୍ରୀ ବିବେକାନନ୍ଦ ଜେନା

ଭୀଷଣ ବର୍ଷା । ଭୁବନେଶ୍ୱର ଆହୁରି ଅନେକ ଦୂର । ଇଞ୍ଜିନର ଶବ୍ଦ, ବର୍ଷା, ହେଡ୍‌ଲାଇଟର ଆଲୁଅର ବୃତ୍ତ ବାହାରେ ଅନ୍ଧାର । ଆହୁରି ଅନେକ ବାଟ ଯିବାକୁ ଅଛି । ଯେଉଁଠାକୁ ଯିବାର ଅଛି ସେଠି ପହଞ୍ଚିବାକୁ କଷ୍ଟସାଧ୍ୟ ହେବ, କାରଣ ଯେଉଁଠାରୁ ମୁଁ ପଳାଇ ଆସିଛି ସେଠି ମୁଁ କିଛି ଛାଡ଼ିଆସି ପାରିନାହିଁ । ଯାହା ମୁଁ ଛାଡ଼ି ଚାଲିଆସିବି ବୋଲି ଏ ରାତି ଅଧରେ ବର୍ଷା, ଘାଟୀ ରାସ୍ତା ସତ୍ତ୍ୱେ ମାଇଲ୍ ଖମ୍ବ ପରେ ମାଇଲ ଖମ୍ବକୁ ଦେଖୁଛି ଠିକ୍ ସେଇ ଜିନିଷ ସବୁ ହେଡ୍‌ଲାଇଟ୍ ଆଲୁଅର ପଛେ ପଛେ ରାସ୍ତା କଡ଼ର ପଥର, ବୁଦା, ଗଛ ଆଡ଼୍ ଆଳରେ ମୋ ସାଙ୍ଗେ ସମାନ୍ତର ହୋଇ ଚାଲିଛନ୍ତି । ଭୁବନେଶ୍ୱର ଆହୁରି ଅନେକ ଦୂର । ଇଞ୍ଜିନ୍‌ର ଶବ୍ଦ, ବର୍ଷା, ଅନ୍ଧାର । ଆଉ ମୋର ଭୀଷଣ ଭୟ ଲାଗୁଛି । ମୁଁ ହୁଏତ ପହଞ୍ଚିବି ନାହିଁ । ନ ପହଞ୍ଚି ପାରିଲେ ଯାହାସବୁ ମୋ ସହିତ ସମାନ୍ତର ହୋଇ ଚାଲିଛନ୍ତି ସେ ସବୁ ମୋତେ ଘେରିଯିବେ । ଓଃ ମୋତେ ଭୟ ଲାଗୁଛି ଭୀଷଣ ।

ବର୍ଷା କମୁନାହିଁ । ପଛରେ ଜଙ୍ଗଲ । ତା' ଉପରେ ବି ଭୀଷଣ ବର୍ଷା ପଡ଼ୁଥିବ । ମାଟି କିଛି ଦିଶୁନାହିଁ । କାଚ ଉପରେ ପାଣି । ପିଚୁ ରାସ୍ତା ଉପରେ ବି ପାଣି । ଅନ୍ଧାର ଉପରେ ବି ବର୍ଷା ପଡ଼ୁଥିବ । ସବୁ ଅସ୍ପଷ୍ଟ । କିନ୍ତୁ ମୁଁ ରହିପାରୁନାହିଁ । କୌଣସି ଅନ୍ଧାର ଘରେ ଟିକେ ଟିକେ ଦେଖିଥିବା ବିକୃତ ସ୍ମୃତିପରି ଅନେକ ସ୍ମୃତି ନ ହେଲେ ମୋତେ ଘେରି ନେବେ । ମୋର ନିଃଶ୍ୱାସ ବନ୍ଦ ହୋଇ ଆସୁଛି । ବୋଧହୁଏ କାଚ ସବୁ ବନ୍ଦ ଅଛି ବୋଲି । ନଚେତ୍ ଅନ୍ଧାରରେ ମୋ ସଙ୍ଗେ ସମାନ ବେଗରେ ଚାଲୁଥିବା ଭୟ ଓ ଭୟର ସ୍ମୃତିସବୁ ଆଉ ସ୍ମୃତି ଓ ସ୍ମୃତିମାନଙ୍କର ଭୟ ସବୁ ବୋଧହୁଏ ଅନ୍ଧାର ଭିତରୁ ହାତ ବଢ଼ାଉଛନ୍ତି ମୋର ନିଶ୍ୱାସ ବନ୍ଦ କରିଦେବା ପାଇଁ । ବାହାରେ ଭୀଷଣ ବର୍ଷା ।

ଅନ୍ଧାର ବଢ଼ୁଛି । ଆଉ ଘାଟୀ ରାସ୍ତା ନାହିଁ । ଖାଲି ଅନ୍ଧାର ଆଉ ଅନ୍ଧାର । ଆଉ ଅସରନ୍ତି ପବନ ଆଉ ବର୍ଷା । ପୁଣି କାର୍ ଭିତର ଅନ୍ଧାର । ଆଉ ଅନ୍ଧାରର ଆଲିଙ୍ଗନ ମୋ ଦେହରେ । ଅନ୍ଧାର ଘର ଭିତରେ କାହା ଦେହର ଆଲିଙ୍ଗନ ପରି ! ଆଉ ସେଇ ଆଲିଙ୍ଗନର ସ୍ମୃତିପରି ଭୟାବହ ଅନ୍ଧାରର ଏଇ ହାତ ବଢ଼ାଇବା । ସେଇ ଆଲିଙ୍ଗନର ଶେଷରେ ଘୃଣାପରି ଅନ୍ଧାରର ଏଇ ଆଲିଙ୍ଗନ, ବର୍ଷା ସତ୍ତ୍ୱେ,

ପବନ ସତ୍ତ୍ୱେ ଆଉ ସାମନାର ଆଲୁଅର ଚଳନ୍ତା ବୃତ୍ତର ବେଗ ସତ୍ତ୍ୱେ କମୁ ନାହିଁ । ଆଉ ଆଲୁଅର ପରିଧିର ଅଧା ଅନ୍ଧାରକୁ ମୁଁ ଚାହିଁ ଚାହିଁ ତୁମକୁ ଖୋଜୁଛି । ମୋତେ ଭୟ ଲାଗୁଛି । ଅନ୍ଧାର ଘରର ଆଲିଙ୍ଗନର ହାତ ମୋ ପାଖରେ ପହଞ୍ଚିଗଲାଣି । ପଛରେ ଅନେକ ଅନ୍ଧାର ।

ହଠାତ ବର୍ଷାର ଶବ୍ଦ । କାଚ ଓହ୍ଲାଇ ଦେଲା ପରେ ହଠାତ୍ ପବନ, ବହୁତ ଓଦା ବହୁତ ମିଠା । ତା' ସଙ୍ଗେ ମାଟିର ମୃଦୁ ବାସନା । ଆଉ ତୁମେ ମୋତେ କହୁଛ—"ଏ ରାତି ଅଧରେ ଗାଡ଼ି ଚଳାଇ ପାଗଳଙ୍କ ଭଳି ବୁଲିବା ଗୋଟାଏ ଦେଖେଇ ହେବା ଭଳିଆ ଯାହା ନ ହେଲେ ଚଳନ୍ତା ନାହିଁ ? କିଛି ଯଦି ହୋଇଯାଏ ।" ପ୍ରକୃତରେ କିଛି ହେବାର ନାହିଁ । କେବଳ ସ୍ମୃତିର ଅନ୍ଧାରରୁ ପଳାଇଯିବା ।" କଣ ବୋଲି କଣ ଭାବି ଭାବି ରାତି ଅଧରେ କାର୍ କଣ ଚାଲିଯାଏ ? ନିହାତି ବାଜେ କଥା ।" ସ୍ମୃତିଠାରୁ ପଳାଇଯିବା ନିହାତି ଦରକାର ସେଟା ବି ତ ନିହାତି ଶ୍ରେଷ୍ଠ କଥା ନୁହେଁ । ମୁଁ ଅନ୍ୟମନସ୍କ ହୋଇ ପଡ଼ୁଛି । ଓଃ ହଠାତ୍ ପାଣି ଟିକେ ମୁହଁରେ ପଡ଼ି ଚେତା ପୁଣି ଫେରିଆସୁଛି ଓ ତା' ସଙ୍ଗେ ଅନ୍ଧାରର ଭୟ ବନ୍ଦଘରର ଅନ୍ଧାର ଓ ଅନ୍ଧାରର ସ୍ମୃତିର ଆଲିଙ୍ଗନ । ପୁଣି ବର୍ଷାର ଶବ୍ଦ ।

ଆଲୁଅର ଚଳନ୍ତା ବୃତ୍ତ । ବର୍ଷା ବୋଧେ ଟିକେ କମିଛି । କଞ୍ଚା ମାଟିର ବାସନା । ହଠାତ୍ ତୁମେ ଯଦି ଏଠି କେଉଁଠି ରହି ଯାଇଥିବ । ଗାଁ ତୋଟାରେ । ନ ହେଲେ ନଡ଼ିଆଟିଆ ପଦ୍ମପୋଖରୀ ଘାଟର ବୃନ୍ଦାବତୀ ଚଉତରାରେ । ଆଉ ତମେ ପୁରା ଭିଜି ଯାଇଥିବ । ଆଉ ତୁମକୁ ଖାଲି ଭୟ ଲାଗୁଥିବ । ତମେ ରାସ୍ତାଧାରର ଟିକେ ପଛକୁ କେଉଁ ଫୁଲ ଫୁଟିଥିବା କିଆଗଛ ପଛରେ ଲୁଚି ରାସ୍ତାକୁ ଚାହୁଁଥିବ । ସେତେବେଳକୁ ଲୁଗା ତୁମର ପୁରା ଭିଜି ଯାଇଥିବ । ତମେ ହାତରେ ଦେହକୁ ଲୁଚାଉଥିବ ଅନ୍ଧାରରେ ରହି ସୁଦ୍ଧା । ଆଉ କିଆ ଫୁଲର ବାସନାଠାରୁ ବି ତୁମର ବାସନା ଆହୁରି ଜୋରରେ ମହକୁଥିବ । ଆଉ ତୁମେ ଭୟରେ କାନ୍ଦୁଥିବ । ତମର କେଶ ପବନରେ ଭାସି ଭାସି କେତେ ଆଡ଼େ ଯାଉଥିବ । କେତେ ତୋଟାରେ ବଉଳ ବାସ୍ନା ହୋଇ ରହିଯାଇଥିବ ଗହଳ ପତ୍ରରେ ଲୁଚି । ବର୍ଷାର ଭୟରେ । ଆଉ ମୁଁ ଆଲୁଅର ବୃତ୍ତର ପରିଧିକୁ ନିରେଖି ଚାହୁଁଛି । ଅନେକ ବାଟ ଚାଲି ଆସିଲିଣି । ସାମନାରେ ଖାଲି ଚଳନ୍ତା ଆଲୁଅର ବୃତ୍ତ । ସେ ବୃତ୍ତ ଶୂନ୍ୟ । ତାହା ଖାଲି ଆଲୁଅର ।

ପରିଧି ଉପରେ ଅଧା ଅନ୍ଧାର । ଖୋର୍ଦ୍ଧା ବି ପାର ହୋଇଗଲାଣି । ଭୁବନେଶ୍ୱର ଆଉ ବେଶୀ ବାଟ ନୁହେଁ । ବର୍ଷା ପ୍ରାୟ ବନ୍ଦ । କିନ୍ତୁ ବା ପାଖ ଇଉକାଲିପ୍ଟସ୍ ବଣରେ ପବନ । ତା'ର ବାସନାଠୁ ବେଶୀ ବାସନା ତୁମର ବାସନା । ଆଲୁଅର ପରିଧିରେ ହଠାତ୍ ତୁମେ । ତା'ପରେ ତୁମେ କହୁଛ,

“କବାଟଟା ଖୋଲ ନାହିଁ ଯେ । ଆଉ କେତେ ସମୟ ଭିଜିବାକୁ ପଡ଼ିବ ।” ଆଉ ମୁଁ ତମକୁ କିଛି କହିପାରୁ ନାହିଁ । ମୁଁ କହିପାରୁ ନାହିଁ ଯେ ଏକା ଏକା ରାତିରେ କାର୍ ଚଳାଇବାଟା ଦେଖେଇ ହେବା ବା ପାଗଳାମି ନୁହେଁ । ମୁଁ ଏକା ଏକା କେବେ ନଥାଏ । ପ୍ରକୃତରେ କିଛି ହୁଏ ନାହିଁ । ଅନ୍ଧାର ଘରର ସ୍ମୃତି ଓ ସ୍ମୃତିର ଆଲିଙ୍ଗନଠାରୁ ଆଲୁଅର ପରିଧିରେ ତୁମକୁ ପାଇବା ପର୍ଯ୍ୟନ୍ତ କିଛି ହୁଏ ନାହିଁ । ମୁଁ ଏକଥା ବି କହିପାରେ ନାହିଁ ଯେ ଏକା ଏକା ରାତିରେ କାର୍ ନ ଚଳାଇଲେ ମୁଁ ତୁମକୁ ପାଏ ନାହିଁ । ଅନ୍ଧାରର ଭୟ ଯାଏ କେବଳ ତମେ କବାଟ ଫିଟାଇ ମୋ ପାଖରେ ବସ ବୋଲି । ଆଉ ବସି ସାରି ଟିକେ ହସ ବୋଲି । ଆଉ ତୁମର ଦେହର ବାସ୍ନା କିଆଫୁଲର ବାସ୍ନାକୁ ବି ବୁଡ଼ାଇଦିଏ । ଆମ ତୁମର ଓଦା ଦେହରେ ପେଣ୍ଠା ପେଣ୍ଠା ଆମ୍ବ ବଉଳର ସୁନ୍ଦରତା ଥାଏ । ଆଉ ତୁମେ ଆସିଲ ପରେ ଚଳନ୍ତା ଆଲୁଅର ବୃତ୍ତର ପରିଧି ଉପରେ ଅଧା ଅନ୍ଧାର ନଥାଏ । ତା’ପରେ ମୁଁ ଦେଖୁଛି ଟାଙ୍ଗିଟା ସାରା ଜହ୍ନ ଆଲୁଅ । ଆଉ ଭୂ-ଚକ୍ର ଦୂର ପଟ ଉପର ଫିକା ଫିକା କୁହୁଡ଼ି ଛଡ଼ା ସମ୍ପୂର୍ଣ୍ଣ ଉଲଗ୍ନ । ଜହ୍ନ ଆଲୁଅର ଅଧା ଅନ୍ଧାର ଚାରିଆଡ଼େ । ପୁଣି ଝାପ୍‌ସା ଆଲୁଅର ପରିଧି ।

ଆଗରେ ଭୁବନେଶ୍ୱର । ବାଁ ପଟେ ଖଣ୍ଡଗିରି । ସେଠିକି ଯିବାକୁ ହେବ ଦିନେ । କିନ୍ତୁ ଆଜି ନୁହେଁ । ଆଉ ଅଳ୍ପ ସମୟ ପରେ ଚଳନ୍ତା ଆଲୁଅର ବୃତ୍ତ ନ ଥିବ । ପଛରେ ଅନ୍ଧାର ନ ଥିବ ବା କିଆ ଫୁଲର ବାସ୍ନା, ଓଦା ମାଟି କି ତା’ଠାରୁ ଆଉ ବେଶୀ କିଛି । କିଛି ସମୟ ପରେ ପ୍ରକୋଷ୍ଠ ଆଉ ତା’ର ଅନ୍ଧାର ।

ମୁଁ ଏକଥା ବି କହିପାରି ନାହିଁ ଯେ ସେ ଅନ୍ଧାର ଘର ଆଉ ଯେତେ ଅନ୍ଧାର ଘରର ସ୍ମୃତି ଆଉ ସେ ସବୁ ସ୍ମୃତିର ଭୟାବହ ଆଲିଙ୍ଗନ ସବୁ ସତ । ସବୁ ସତ ଆଉ ତୁମେ ମିଛ । ତୁମେ ଖାଲି ଗୋଟିଏ ଅନ୍ଧାର ଘରରୁ ଆଉ ଗୋଟିଏ ଅନ୍ଧାର ଘରକୁ ଯିବାର ରାସ୍ତା । ରାସ୍ତା ମିଛ, ଯାତ୍ରା ମିଛ । ତୁମେ ବି ।

କିନ୍ତୁ ତୁମର ସ୍ମୃତି ବି ଅନ୍ଧାର ।



# ମହାତୀର୍ଥ ଯାତ୍ରୀ

● ଶ୍ରୀ ନାରାୟଣ ପଣ୍ଡା

ରେଲ୍‌ଗାଡ଼ି ପୂର୍ବରୁ ଯାତ୍ରୀମାନେ ମହାତୀର୍ଥରେ ପହଞ୍ଚୁଥିଲେ କି ନାହିଁ ସେ ପ୍ରଶ୍ନ ଅପ୍ରାସଙ୍ଗିକ । କାରଣ ଆମ ବେଳକୁ ରେଲ୍‌ଗାଡ଼ି ଥିଲା ଓ ଏହାର ସମସ୍ତ ତ୍ରୁଟି, ଶବ୍ଦ ଓ ବିକଟତା ସତ୍ତ୍ୱେ ଆମକୁ ସେଥିରେ ବସିବାକୁ ହୋଇଥିଲା । ମହାତୀର୍ଥ ପରି ଏକ ଦୁର୍ଗମ୍ୟ ସ୍ଥାନକୁ ରେଲ୍‌ଗାଡ଼ି ବ୍ୟତୀତ ଯାଇହେବା ଯେ ଅତ୍ୟନ୍ତ କଷ୍ଟସାଧ୍ୟ ଏକଥା ଉକ୍ତ ଯାତ୍ରାର ପରିଚାଳକ ମହୋଦୟ ବାରମ୍ବାର କହି ଚେତାଇ ଦେଇଥିଲେ ଓ ଏ ଦିଗରେ ରେଲ୍‌ଗାଡ଼ି ପ୍ରଦାନ କରିବାକୁ ଯାଉଥିବା ସ୍ୱାଚ୍ଛନ୍ଦ୍ୟ ସମ୍ପର୍କରେ ବର୍ଣ୍ଣନା କରିସାରି କହୁଥିଲେ—ରେଲ୍‌ଗାଡ଼ିରେ ନ ବସି ମହାତୀର୍ଥରେ ପହଞ୍ଚିବା କଥା ଭୁଲରେ ବି କେହି ମନକୁ ଆଣନ୍ତୁ ନାହିଁ ।

ଅବଶ୍ୟ ମହାତୀର୍ଥ ସଂପର୍କରେ କୌଣସି ତୀର୍ଥଯାତ୍ରୀଙ୍କର ପ୍ରତ୍ୟକ୍ଷ ଅଭିଜ୍ଞତା ନ ଥିଲା । କିନ୍ତୁ ଆମେମାନେ ମନେକରିଥିଲୁ ଏହା ନିଶ୍ଚୟ ସେଇ ଧାମ ଯେଉଁଠାରେ ପ୍ରତ୍ୟେକେ ନିଜର ସର୍ବୋତ୍ତମ ନିଜତ୍ୱ ହାସଲ କରି ପାରନ୍ତି ।

ଆମେ ସମସ୍ତେ ତେଣୁ ଷ୍ଟେସନରେ ଜମା ହେଲୁ । ବାଷ୍ପୀୟ ଇଞ୍ଜିନ୍ ଯୋଡ଼ି-ଯାଇଥିବା ରେଲ୍‌ଗାଡ଼ି ଓ ପରିଚାଳକ ସେଠାରେ ଥିଲେ । ପରିଚାଳକ ରେଲ୍‌ଗାଡ଼ି-ଆଡ଼କୁ ହାତ ଦେଖାଇ କହିଲେ—ଦେଖନ୍ତୁ ଏ ରେଲ୍‌ଗାଡ଼ିର ନୂଆ ଡବାଗୁଡ଼ିକ କିମିତି ଚକ୍‌ଚକ୍ ଆଶାକରାଯାଏ । ଏହାକୁ ଅବିରତ ଏଇଭଳି ସଫାସୁତୁରା ରଖିବାରେ ଆପଣମାନେ ସଜାଗ୍ ରହିବେ ଓ ସେ ଦିଗରେ ପ୍ରଥମ ସହାଯୋଗ ସ୍ୱରୂପ ଏଠାକାର ଷ୍ଟେସନ୍‌ର ସ୍ନାନାଗାରର ସଦ୍‌ବ୍ୟବହାର କରିବେ ।

ଆମେମାନେ ସମସ୍ତେ ଷ୍ଟେସନ୍‌ର ସ୍ନାନାଗାରମାନଙ୍କୁ ଯାଇ ସେଠାରେ ପାଇପ ଝରଝରରେ ସ୍ନାନ କଲୁ । ଉକ୍ତ ସ୍ନାନାଗାରମାନଙ୍କର ଝରଝର ଗୁଡ଼ିକ ଆମମାନଙ୍କ ଶରୀରରେ ଏକ ପ୍ରଲେପ ପରି ମନେହେଲା । ରେଲ୍‌ଗାଡ଼ି ଭିତରେ ନିଜନିଜ ସ୍ଥାନରେ ବସି ସାରିବା ପରେ ଉକ୍ତ ପ୍ରଲେପଟି ଆମ ଦେହର ଚମଡ଼ାକୁ ଖୁବ୍ ଟାଆଁସା ଓ ଟାଣ କରିଦେଲା । କୌଣସି ଯାତ୍ରୀ ଏ ସଂପର୍କରେ କିଛି ପ୍ରଶ୍ନକରିବା ପୂର୍ବରୁ ପରିଚାଳକ କହିଲେ—ରେଲ୍‌ଗାଡ଼ିର ବେଗ ସହ ଅନଭ୍ୟସ୍ତ ଯାତ୍ରୀମାନଙ୍କର ସ୍ୱାସ୍ଥ୍ୟଗତ ନିରାପତ୍ତାଲାଗି ଉକ୍ତ ଝରଝରର ଜଳରେ ଏକରକମର ପଦାର୍ଥ ମିଶାଯାଇଥିଲା ଯାହାଫଳରେ ଚମଡ଼ାଗୁଡ଼ିକ ଟାଆଁସା ଓ ଟାଣୁଆ ହୋଇଗଲା । ଏହା ଫଳରେ ଚର୍ମର ସ୍ପର୍ଶଶକ୍ତି ହୁଏତ କିଞ୍ଚିତ ବ୍ୟାହତ ହୋଇପାରେ କିନ୍ତୁ ଦେହରେ ପବନ ଭେଦିବ ନାହିଁ । ତେଣୁ ଡର ହେବନି, ନିରାପଦରେ ମହାତୀର୍ଥରେ

ପହଞ୍ଚି ହେବ । ସାମାନ୍ୟ ସ୍ପର୍ଶଶକ୍ତି ବିନିମୟରେ ମହାତୀର୍ଥରେ ପହଞ୍ଚିବାର ନିଶ୍ଚିତ ସମ୍ଭାବନା ଅଧିକ ଲାଭପ୍ରଦ ନୁହେଁକି ?

ଲାଭପ୍ରଦ ନିଶ୍ଚୟ ବୋଲି ଆମେମାନେ ବି ଭାବିନେଲୁ, ଯଦିଓ କାଞ୍ଚିତ ନୁହେଁ, ସ୍ପର୍ଶଶକ୍ତି ଅଧିକାଂଶତଃ ନଷ୍ଟ ହୋଇଗଲା ଓ ଆମ ପ୍ରତ୍ୟେକଙ୍କୁ ବେଢ଼ି ରହିଲା ନିଜ ନିଜ ଚମତ୍କାର ନିଜସ୍ୱ ଗୋଟିଏ ଲେଖା ଆବରଣ ।

ଅନେକ ଦିନ ଓ ରାତିର ଯାତ୍ରାପରେ ଦିନେ ଯାତ୍ରା ପରିଚାଳକ ଘୋଷଣା କଲେ—ବନ୍ଧୁଗଣ, ଶୁଭ ସମ୍ବାଦଟିଏ ଶୁଣନ୍ତୁ । ଆଉ କିଛି ଘଣ୍ଟାର ଯାତ୍ରାପରେ ଆମେମାନେ ଏକ ଜଙ୍କସନ୍ ଷ୍ଟେସନରେ ପହଞ୍ଚିବା । ଏହି ଗାଡ଼ିକୁ ତ୍ୟାଗ କରି ଆମେମାନେ ଏକ ବିଦ୍ୟୁତ୍‌ଚାଳିତ ଗାଡ଼ିରେ ବସିବା । ତାହା ଅଧିକ ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ ବେଗଶାଳୀ । ଆଶାକରେ ଏହାଶୁଣି ଆପଣମାନେ ଖୁସୀ ହେଲେ ।

ଜଙ୍କସନ ଷ୍ଟେସନ୍ ପହଞ୍ଚିଲା । ଆମେ ସବୁ ଆମ ରେଲଗାଡ଼ିରୁ ଓହ୍ଲାଇ ଆମମାନଙ୍କ ଲାଗି ଉଦ୍ଦିଷ୍ଟ ବୈଦ୍ୟୁତିକ ଇଞ୍ଜିନ ଲାଗିଥିବା ରେଲଗାଡ଼ି ଅଟକି ଥିବା ପ୍ଲାଟଫର୍ମକୁ ଓଭର ବ୍ରିଜ ପାର ହୋଇଗଲୁ । ଉକ୍ତ ପ୍ଲାଟଫର୍ମରେ ପହଞ୍ଚିବା ପରେ ଆମ ପରିଚାଳକ ଘୋଷଣା କଲେ—ବୈଦ୍ୟୁତିକ ରେଲ୍‌ଗାଡ଼ିରେ ବସିବାକୁ ଯିବା ସବୁଯାତ୍ରୀ ଏ ଷ୍ଟେସନର ସ୍ନାନାଗାରରେ ବି ସ୍ନାନ କରି ନିଅନ୍ତୁ । କୌଣସି ଅଚାଧୁଆ ଯାତ୍ରୀଙ୍କୁ ବିଦ୍ୟୁତ ରେଲ୍‌ଗାଡ଼ିରେ ଚଢ଼ିବାକୁ ଦିଆଯିବ ନାହିଁ ।

ପୂର୍ବରୁ ସ୍ପର୍ଶ ଶକ୍ତି ବଞ୍ଚିତ ହୋଇଥିବା ହେତୁ ସ୍ନାନ ବିମୁଖ କୌଣସି କୌଣସି ଯାତ୍ରୀ ଗୁଁ ଗୁଁ ହୋଇ ବସୁଥିଲେ; କିନ୍ତୁ ପରିଚାଳକ ଗମ୍ଭୀର ସ୍ୱରରେ ଘୋଷଣା କଲେ—ଯେ ସ୍ନାନାଗାରରେ ନ ଗାଧୋଇବ ତାକୁ ଛାଡ଼ି ରେଲ୍‌ଗାଡ଼ି ଚାଲିଯିବ ।

ଅପରିଚିତ ଉକ୍ତ ଅପନ୍ତରା ଜଙ୍କ୍‌ସନ୍‌ରେ କିଏ ବା ଏକୁଟିଆ ପରିତ୍ୟକ୍ତ ହୋଇ ରହିବାକୁ ସାହସ କରନ୍ତା । ତା ଛଡ଼ା ମହାତୀର୍ଥରେ ପହଞ୍ଚିବା ଆକର୍ଷଣ ଏଡ଼ି ଦେବାକୁ କାହାର ବା ଇଚ୍ଛା ହୁଅନ୍ତା । ତେଣୁ ଇଚ୍ଛାକ ଅନିଚ୍ଛାକ ସମସ୍ତେ ସ୍ନାନାଗାରମାନଙ୍କୁ ପଶିଲେ । ସେଠାକାର ଝରଝରିଗୁଡ଼ିକରୁ ଜଳ ବଦଳରେ ଅନ୍ୟ କୌଣସି ଏକ ଅପେକ୍ଷାକୃତ ବହଳିଆ ତରଳ ପଦାର୍ଥ ଝରୁଥିବା ପରି ଆମ ଆଖିକୁ ଦିଶିଲା, ଦେଖି ଜାଣିଲୁ ଯାହା, ଛୁଇଁ ଜାଣିବାର ଉପାୟତ ନ ଥିଲା, ତାହାବି ଆମ ଶରୀରରେ ପ୍ରଲେପ ପରି ବୋଲି ହେଲା ।

ଆମେ ସମସ୍ତେ ବୈଦ୍ୟୁତିକ ରେଲ୍‌ଗାଡ଼ିରେ ପ୍ରବେଶ କଲୁ । ବାସ୍ତବିକ ଏହା ଅଧିକ ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ ଥିଲା । ସିଟ୍‌ଗୁଡ଼ିକରେ ଗଦି ଥିଲା ଓ ବିଜୁଳିପଙ୍ଖାର ବ୍ୟବସ୍ଥା ଥିଲା । କିନ୍ତୁ ରେଲ୍‌ଗାଡ଼ିରେ ବସିବାପରେ ମନେହେଲା ବହଳିଆ ତରଳ ପଦାର୍ଥର ଉକ୍ତ ପ୍ରଲେପଟି ଯେମିତି ଆମର ସମଗ୍ର ଶରୀରକୁ ପ୍ଲାଷ୍ଟର୍ ଅଫ୍ ପେରିସ୍ ଦେଇ କିରୁଯାଇଥିବା ବେଣ୍ଡେଜ୍‌ପରି ଚପି ଧରିଛି । ପରେ ପରେ ଆମ ସମସ୍ତ

ଶରୀରକୁ ଘୋଡ଼େଇ ପକେଇଥିବା ବେଣ୍ଡେଜ୍ ପରି ଆବରଣଟିଏ ଆମ ଆଖିକୁ ପରିଷ୍କାର ଦେଖାଗଲା ଓ ଆମର ଅଙ୍ଗପ୍ରତ୍ୟଙ୍ଗ ଗୁଡ଼ିକ ଚଳତ୍‌ଶକ୍ତି ରହିତ ହୋଇଗଲେ ।

ଏଥର ମଧ୍ୟ କେହି କିଛି ପଚାରିବା ପୂର୍ବରୁ ପରିଚାଳକ କହିଲେ—ବନ୍ଧୁଗଣ, ବିଦ୍ୟୁତ୍ ରେଲ୍‌ଗାଡ଼ିରେ ଯଦି କୌଣସି ମତେ ସାମାନ୍ୟ ଗଳ୍‌ତି ଘଟେ ତେବେ ସମଗ୍ର ରେଲ୍‌ଗାଡ଼ିଟିରେ ବିଦ୍ୟୁତ୍ ସଞ୍ଚାରିତ ହୋଇଯିବ । ଏହାର ଭୟାବହ ପରିଣାମ ଆପଣମାନେ ହୃଦୟଙ୍ଗମ କରୁଥିବେ ନିଶ୍ଚୟ । ତେଣୁ ଆପଣମାନଙ୍କ ଶରୀରରେ ଏହା ନିରାପତ୍ତାମୂଳକ ବେଣ୍ଡେଜ୍‌ପରି ଆବରଣ ।

ଆମେମାନେ କିଛି କହିଲୁ ନାହିଁ । ମହାତୀର୍ଥରେ ପହଞ୍ଚିବା ଲାଗି ଆମର ଏ ଯାତ୍ରାପଥରେ ପରିଚାଳକଙ୍କର ତେବେ ଏହା ଅନ୍ୟ ଏକ ନିରାପତ୍ତାମୂଳକ ବ୍ୟବସ୍ଥା !

ପୁନଶ୍ଚ ଯାତ୍ରାରମ୍ଭ । ଆହୁରି ଅନେକ ଦିନ ଓ ରାତିର ଯାତ୍ରାପରେ ପରିଚାଳକ କହିଲେ—ଆଜି ଏକ ଶୁଭସମ୍ବାଦ । 'ଶୁଭ ସମ୍ବାଦ' ଶବ୍ଦ ଦୁଇଟିକୁ ଶୁଣି ଶୁଣି ଆମେମାନେ ସାମାନ୍ୟ ଶଙ୍କିତ ହେଲୁ । ସେ କହିଲେ—ଏହାପରେ ଆଉ ଗୋଟିଏ ଜଙ୍କସନ୍ ଷ୍ଟେସନ୍ ପଡ଼ିବ । ସେଠାରେ ଆପଣମାନଙ୍କ ପାଇଁ ଅତ୍ୟଧିକ ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ, ଅତ୍ୟଧିକ ବେଗଶାଳୀ ଆଣବିକ ଶକ୍ତିରେ ପରିଚାଳିତ ଏକ ରେଲ୍-ଗାଡ଼ିର ବ୍ୟବସ୍ଥା କରାଯାଇଛି ।

ଉକ୍ତ ଜଙ୍କସନ୍ ପହଞ୍ଚିଲା ।

ପରିଚାଳକ କୁଲି ଲଗେଇ ଆମମାନଙ୍କୁ ବିଦ୍ୟୁତ ରେଲ୍‌ଗାଡ଼ିରୁ ଓହ୍ଲେଇ ଦେଲେ କାରଣ ନିଜ ନିଜ ଗୋଡ଼ ସାହାଯ୍ୟରେ ଚାଲିବା ମମତା ଆଉ ଆମର ନ ଥିଲା । କୁଲି ଲଗେଇ ମଧ୍ୟ ସେ ଆମକୁ ଓଭର୍‌ବ୍ରିଜ ଉଠେଇଲେ ଓ ଓହ୍ଲେଇଲେ । ତାପରେ ଆଲକାତରାପରି ଏକ ଅଠାଳିଆ ପଦାର୍ଥ ଭର୍ତ୍ତି ଥିବା ବିରାଟ ଡ୍ରମ୍ ପାଖରେ ଆମମାନଙ୍କୁ ଜମା କଲେ । କବାଟରେ ରଙ୍ଗଦେବା ବ୍ରସ୍‌ପରି ଗୋଟିଏ ବ୍ରସ୍‌ରେ ଡ୍ରମର୍ ପଦାର୍ଥକୁ ଆଣି ଆମମାନଙ୍କ ବେଣ୍ଡେଜ୍‌ପରି ଆବରଣରେ ବୋଳିଲେ ଓ ଆମକୁ ଆଣବିକ ଶକ୍ତି ପରିଚାଳିତ ଇଞ୍ଜିନ୍ ଲାଗିଥିବା ରେଲ୍‌ର ଡବା ଭିତରକୁ ପ୍ରବେଶ କରାଇଲେ ।

ବାସ୍ତବିକ୍ ଏଇ ରେଲ୍‌ଟି ଥିଲା ସବୁଠାରୁ ଅଧିକ ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ । ପ୍ରତ୍ୟେକ ଯାତ୍ରୀଙ୍କ ପାଇଁ ଆଇନା ଲାଗିଥାଇ ହାତ ଧୋଇବା ବେସିନ ଥିଲା ଓ ସ୍ୱତନ୍ତ୍ର ପାଇଖାନା, ବାକି କଥା ବା କ'ଣ କୁହାଯାଇପାରେ । ଗଦି ଥିଲା ଖୁବ୍ ନରମ, ଫ୍ୟାନ୍‌ର ତ ଆବଶ୍ୟକତା ନ ଥିଲା, ସମ୍ପୂର୍ଣ୍ଣରୂପେ ଶୀତତାପ ନିୟନ୍ତ୍ରିତ । କିନ୍ତୁ ବେଣ୍ଡେଜ୍‌ପରି ଆବରଣଟି ଉକ୍ତ ଆଲକାତରାପରି ପ୍ରଲେପ ଦିଆଯାଇଥିବା ହେତୁ

ଏକ ଲୁହା ସାଞ୍ଚ୍‌ରେ ରେଲ୍ ଭିତରେ ଆମେ ପ୍ରବେଶ କରୁକରୁ ପରିଣତ ହୋଇଗଲି ।

ତଥାପି ମହାତୀର୍ଥ କ୍ରମଶଃ ନିକଟତର ହୋଇଆସୁଛି ବୋଲି ଜାଣୁଥିବାରୁ ଆମେମାନେ ଶାନ୍ତ୍ୱନା ପାଉଥିଲୁ । ପରିଚାଳକ କିନ୍ତୁ ଘୋଷଣା କଲେ—ବନ୍ଧୁଗଣ, କାଳେ କେତେବେଳେ ଆଣବିକ ତେଜସ୍କ୍ରିୟତା ଫଳରେ ଆପଣମାନେ ପୀଡ଼ିତ ହେବେ, ସେଇ ଆଶଙ୍କାରୁ ମୁକ୍ତ ହେବାପାଇଁ ଆପଣମାନଙ୍କର ଆବରଣକୁ ଏତେ ଶକ୍ତିଶାଳୀ କରାଗଲା, କିଛି ମନେକରିବେନି ।

ମନେ କରିଥିଲେ ବି କ'ଣଟା ଆମେ ଛାଡ଼ିଥାଆନ୍ତୁ ।

ଗୋଟିଏ ଜାଗାରେ ହଠାତ୍ ଉକ୍ତ ରେଲ୍‌ଟି ଅଟକିଗଲା ଯଦିଓ କିନ୍ତୁ କେହି ବିପଦଶିଙ୍କୁଳୀ ଟାଣି ନ ଥିଲେ ।

ଭୁଙ୍ଗ୍ ଭୁଙ୍ଗ୍ କ'ଣ ନା, ଆଉ ଏଣିକି ରେଲ୍‌ରାସ୍ତା ପଡ଼ିନାହିଁ, ତେବେ···?

ସବୁକିଛି ହଠାତ୍ ହରେଇବାର ଏକ ଆତଙ୍କ ସାଏଁ କରି ସମଗ୍ର ଯାତ୍ରୀ ମହଲରେ ଖେଳିଗଲା । ଏତେ କଷ୍ଟସହି, ସ୍ପର୍ଶଶକ୍ତି ଓ ଚଳତ୍‌ଶକ୍ତିରୁ ବଞ୍ଚିତ ହୋଇ ଲୁହାର ପୋଷାକପିନ୍ଧି ମାଦଳପରି ପଡ଼ିରହି ଶେଷରେ କ'ଣ ନା, ରାସ୍ତା ଆଉ ନାହିଁ ।

ଭୟ ନାହିଁ ବନ୍ଧୁଗଣ, ପରିଚାଳକ କହିଲେ, ରେଲ୍‌ରାସ୍ତା ତିଆରି ହେବ ଓ ରେଲ୍‌ଗାଡ଼ି ତା ଉପରେ ନିଶ୍ଚୟ ଚାଲିବ ! ଆପଣମାନଙ୍କ ଉପରେ ଅଛି ଲୁହାର ଏକ ଏକ ଆବରଣ । ତେଣୁ ରେଲ୍‌ଲାଇନ୍‌ର ସ୍ଲିପର୍ ଆପଣମାନେ ବେଶ ହୋଇପାରିବେ ।

ଏହାପରେ ଆମମାନଙ୍କୁ ଓହ୍ଲେଇ ନିଆଗଲା ଓ ଆମମାନଙ୍କୁ ସ୍ଲିପର୍ କରାଯାଇ ଆମ ଉପରେ ଧାରଣା ବସାଗଲା ଓ ଧାରଣାଗୁଡ଼ିକୁ ନଟବୋଲ୍ଟ୍ ଦ୍ୱାରା ଉପଯୁକ୍ତ ଭାବେ ଉତ୍ତାପ ହେତୁ ଧାତୁର ପ୍ରସାରଣ କିମ୍ବା ପ୍ରତି ଦୃଷ୍ଟି ରଖାଯାଇ ଫାଙ୍କ ଛାଡ଼ି ଯୋଡ଼ାଗଲା । ପ୍ରଚଣ୍ଡ ଶବ୍ଦ କରି ଉକ୍ତ ଧାରଣାଗୁଡ଼ିକ ଉପରେ ଉକ୍ତ ରେଲ୍‌ଗାଡ଼ିଟି ଗଡ଼ିଚାଲିଲା ମହାତୀର୍ଥ ଦିଗକୁ ଯଦିଓ ରେଲ୍‌ଗାଡ଼ିରେ କେବଳ ପରିଚାଳକ ଓ ତା'ର ସ୍ୱଜନବର୍ଗ ବ୍ୟତୀତ ଅନ୍ୟ କୌଣସି ଯାତ୍ରୀ ନ ଥିଲେ ।

କାରଣ ଆମେସବୁ ରେଲ୍‌ଲାଇନ୍‌ର ସ୍ଲିପର୍ ହୋଇଥିଲୁ ।

---

## Subscribe Soviet Periodicals
## Receive Calender As
## Free Gift

| *Name* | *One year* | *Twoyear* | *Three year* |
|---|---|---|---|
| Soviet Union | 7.00 | 11 00 | 14.00 |
| Moscow-News | 4.50 | 7.00 | 9.00 |
| Culture and-Life | 7.00 | 11.00 | 14.00 |
| Soviet Woman | 5.00 | 7.00 | 10.00 |
| New Times | 6.00 | 9.00 | 12.00 |
| Soivet Litera-lure | 7.00 | 11.00 | 14.00 |
| Interna tional-Affairs | 7 00 | 11.00 | 14.00 |
| Soviet film | 8.00 | 12.00 | 16.00 |
| Sputnik | 30.00 | 45.00 | 60 00 |
| Sports in the-U. S. S. R. | 4.00 | 6.00 | 8.00 |
| XXth Century and World Peace | 4.00 | 6.00 | 8.00 |
| Foreign Trade | 90.00 | 165.00 | 225.00 |
| Soviet Military Review | 15.00 | 22.00 | 30.00 |
| Travel to the Soviet-union | 12.00 | 18.00 | 24.00 |

Send Your Subscription Immideatly

**NABAJUGA GRANTHALAY**

**BAJRAKABATI ROAD**

CUTTACK—1

ମୈତ୍ରୀ

ସଂପାଦକ : କୃଷ୍ଣଚନ୍ଦ୍ର ପାଣିଗ୍ରାହୀ,

ପୋ:—ବାଲ୍‌ଗାଁ, ପୁରୀ

# PERIODICAL STORY COLLECTION-2.(Feb. 71)

## ସୂଚନା :

ଏହି ଅନିୟମିତ ଗଳ୍ପସଂକଳନରେ କେବଳ ଗଳ୍ପ ଏବଂ ଗଳ୍ପ ସମ୍ବନ୍ଧୀୟ ପ୍ରବନ୍ଧ ଆଲୋଚନା ପ୍ରକାଶ ପାଏ । ଲେଖକମାନେ ନିଜ ନିଜ ମୂଳ ଲେଖାର କପି ସହିତ ନିଜର ବ୍ଲକ କିମ୍ବା ପାସପୋର୍ଟ ସାଇଜର ଫୋଟୋ ଆମ ନିକଟକୁ ପଠାଇବା ଆବଶ୍ୟକ । ଅମନୋନୀତ ଲେଖା ଫେରସ୍ତ ଦିଆଯାଏ ନାହିଁ । ଲେଖା ପ୍ରକାଶ କରିବାପାଇଁ ସମ୍ପାଦକମଣ୍ଡଳୀ ବାଧ୍ୟ ନୁହନ୍ତି । ଏ ସଂଖ୍ୟାରେ ଲେଖକମାନଙ୍କର ଫଟୋ ପ୍ରକାଶ କରିପାରି ନ ଥିବାରୁ ଆମେ ଦୁଃଖିତ । ଆସନ୍ତା ସଂଖ୍ୟାରୁ ଏହା ନିୟମିତ ପ୍ରକାଶ କରାଯିବାର ଚେଷ୍ଟା କରାଯିବ ।

★ ଏ ସଂଖ୍ୟାର ମୂଲ୍ୟ ଏକ ଟଙ୍କା ଏବଂ ପ୍ରତି ସଂକଳନ ରେଜିଷ୍ଟ୍ରି ଡାକରେ ପାଇବାକୁ ହେଲେ ଟ ୨·୦୦ ଅଗ୍ରୀମ ପଠାଇବା ଆବଶ୍ୟକ ।

★ ଏଜେଣ୍ଟମାନଙ୍କୁ ସାଧାରଣତଃ ଭି. ପି. ପି.ରେ ଏହା ପଠାଯାଏ ।

★ ଏହି ସାମୟିକ ଗଳ୍ପ ସଂକଳନ ପାଇଁ ବିଜ୍ଞାପନଦାତାଙ୍କଠାରୁ ବିଜ୍ଞାପନ ଗ୍ରହଣ କରାଯାଏ । ନିର୍ଦ୍ଧାରିତ ବିଜ୍ଞାପନର ହାର ଆବଶ୍ୟକ ସ୍ଥଳେ ହ୍ରାସ କରାଯାଏ ।

---

*Editor*
Sri Sisir Mohapatra
*Managing Editor*
Sri Subash Mahtab

*Published by*
Sri Gokulanada Das at
Swarnaprava Printers
Dagarpara, Cuttack-2.

ବିକ୍ରୟ କେନ୍ଦ୍ର :

ଦି ଇନ୍‌ଫରମିକା

କଟକ-୩

*Price Rs. 1-00*